# ପାହାଡ଼ର ପୀଡ଼ା



ଦେବ ରଞ୍ଜନ

‘ଏ ସଭ୍ୟତାର ଆରମ୍ଭ ମୁଁ ହେଲେ ଆଜି ପୁଣି ମଣିଷର ଉନ୍ନତିର ବାଧକ ମୁଁ... !’ ଦୀର୍ଘ ନିଃଶ୍ୱାସ ନେଇ ବୃକ୍ଷଟି କେତେ କଥା ଭାବିଚାଲିଥିଲା ।

-ଗୁଣ୍ଡୁଚି ମୂଷା ଉପରେ ରାମଙ୍କ ପ୍ରହାର



ପାହାଡ଼ର ପୀଡ଼ା
ଲେଖକ : ଦେବ ରଞ୍ଜନ
ପ୍ରକାଶକ : ସବୁଜ, ଗୋବିନ୍ଦପୁର,
ଜାହାନପୁର, ଦେବୀଦ୍ୱାର, ଯାଜପୁର-୭
ପ୍ରଚ୍ଛଦ : ରାମଦାଶ ହାରକା
ମୁଦ୍ରଣ : ଗ୍ରାଫିକ୍ସ ୱାର୍ଲ୍ଡ, ବାଦାମବାଡ଼ି, କଟକ-୧୨
ପ୍ରଥମ ସଂସ୍କରଣ : ଦଶହରା-୨୦୧୭
ମୂଲ୍ୟ : ଟ ୧୨୦/-

PAHADARA PIDA
[A Collection of Odia Short Stories]
Written By : *Deba Ranjan*
Rs. 120.00

**ସେମାନଙ୍କ ପାଇଁ...**

ଯେଉଁମାନଙ୍କର ପ୍ରତ୍ୟେକ ଶବ୍ଦ ମୋ ପାଇଁ ନୂଆ
କିଛି ଚିନ୍ତା କରିବାରେ ବାଧ୍ୟ କରୁଥିଲା
ଅଭିବକ୍ତ କୋରାପୁଟ ଜିଲ୍ଲାର ସେହି
ବୁଲ୍‌କା ମିଣିଆକ୍କା, ଆଲ୍ଲାଇ ମାଝୀ, ନିନାଦେଇ
ଦିଶାରି, ରାତୁ ମାଝୀ ଓ ଅନ୍ୟମାନଙ୍କୁ....

– ଦେବ ରଞ୍ଜନ

# ପାହାଡ଼ର ପୀଡ଼ା

**ଉପକ୍ରମ :**

ରାତି ଆସେ
କିଟିମିଟିଆ ଅନ୍ଧାରରେ
ନିର୍ଜନତାର ଆଢୁଆଳରେ
ବିକାଶ ଓ ଦେଶଦ୍ରୋହର ବାର୍ତ୍ତା ନେଇ
ଏବେ ରାତି ଆସେ
ସମସ୍ତେ ଶୋଇଗଲା ପରେ ।

ରାତି ଆସେ
ଠକ୍ ଠକ୍ କରେ
ଦୁଆରେ ହୁକୁମ୍ ଦିଏ
ଷ୍ଟେନ୍‌ଗନ୍ ଓ ଏକେ ସତଚାଳିଶରେ
ଦେଶ ପାଇଁ ଏ ଅପରେସନ୍
ଧାନ, ସୁଆଁ, ମାଣ୍ଡିଆ ଓ କାନ୍ଦୁଲରେ ନିଆଁ ଲାଗେ
ରାତି ଗରଜେ
"ତୁ ଚୋର, ତୁ ଡକାୟତ, ତୁ ଦେଶଦ୍ରୋହୀ
ତୁ ସଂଗ୍ରାମର ।"

ରାତି ଆସୁଥିଲା
ଉଇଁଥିବା ଜହ୍ନ ଓ ତାରା ଗହଣରୁ
ଗାଁ ଦାଣ୍ଡରେ
ଅଣ୍ଟା ସହିତ ଅଣ୍ଟାର ଝୁଲାରିରେ

ହାତ ସହ ହାତର ଛନ୍ଦରେ
ପାଦ ସହ ପାଦର ତାଳରେ
ଢୁଣ୍ଟୁଢୁଣ୍ଟୁ ଗୀତରେ
ନଦୀ, ଝରଣା, ପାହାଡ଼, ଜଙ୍ଗଲ ଓ ଫୁଲ ଭିତରେ
ସେମାନଙ୍କ ପ୍ରେମରେ ।

ଏ ଦେଶ ବହୁତ ବିଶାଳ, ବହୁତ ଶକ୍ତିଶାଳୀ ମଧ୍ୟ । ବହୁତ ସ୍ୱପ୍ନ ଓ ବହୁତଙ୍କ ଆକାଂକ୍ଷାକୁ ଏ ଦେଶ ଧରି ରଖିଛି । ଗୋଟେ ପଟେ ଜାତୀୟତାକୁ ଦେଶର ସର୍ବସ୍ୱ ଗଣାଯାଉଛି ତ ଅନ୍ୟପଟେ ନିଜଲୋକଙ୍କ ଜମି, ଜଙ୍ଗଲ, ନଦୀ ଓ ପାହାଡ଼କୁ ଜବରଦସ୍ତ ନେଇଯାଇ ଦରିଦ୍ର ହେବାର ନୀତିକୁ ଲଦି ଦିଆଯାଉଛି । ତାହାକୁ ହିଁ କୁହାଯାଉଛି ଦେଶପ୍ରେମ । ଆଦିବାସୀ ଜନଆନ୍ଦୋଳନ ସହିତ ମୋର ସଂପୃକ୍ତି ମୋତେ ନୂଆ ବିଚାର ଦେଇଛି । ସେହି ସଂପୃକ୍ତି କାଳରେ ସର୍ବଦା ମୁଁ ଦୁଇ ପ୍ରକାର ଜୀବନ ଦେଖିଛି । ଗୋଟେପଟେ ଲଢୁଥିବା ଆଦିବାସୀଙ୍କ ପ୍ରକୃତିମନସ୍କ ଜୀବନ ତ ଅନ୍ୟପଟେ ଅର୍ଥ ଆକାଂକ୍ଷାରେ ବାଉଳି ହେଉଥିବା 'ମୁଖ୍ୟସ୍ରୋତ' । ଏହାର ସଂଘାତ ବହୁଥର ବହୁ ସ୍ଥାନରେ ମୁଁ ଦେଖିଛି । କେବେ କବିତା ଲେଖୁନଥିବା ମୋର ମନ ଏହି ଉପରୋକ୍ତ କବିତାର ପଂକ୍ତିରେ ବେଶ କିଛି ଦିନ ଘାରି ହୋଇଥିଲା ଯେତେବେଳେ ବାସଂଗମାଳୀ ଏନ୍‌କାଉଣ୍ଟରରେ ମୁଁ ଜାଣିଥିବା ଛୋଟ ପିଲାମାନେ ଝଡ଼ିପଡ଼ିବାର ଖବର ପାଇଥିଲି । ସେହିଭଳି କିଛି ସଂଘାତରୁ ଛିଟିକି ପଡ଼ିଥିବା ଚରିତ୍ରମାନେ ହେଲେ ଗଙ୍ଗା ମାଝୀ, ମୁକୁନା ଦିଶାରି, ମୁକୁନ୍ଦି ସାଉଁତା ଓ ମନୋହର ଝୋଡ଼ିଆ ଭଳି ବ୍ୟକ୍ତିମାନେ ଯେଉଁମାନେ ଭିନ୍ନଭିନ୍ନ ନାମରେ ମୋର ଗଳ୍ପରେ ସ୍ଥାନୀତ ହୋଇଛନ୍ତି । ଏମାନେ ମୋ ଗଳ୍ପର ପ୍ରମୁଖ ଚରିତ୍ର । ମୁଁ ସେମାନଙ୍କ ବନ୍ଧୁ ବତ୍ସଳତା ନିକଟରେ ଚିର ଋଣୀ ।

"ଇଏ କ'ଣ ସେଇ ଦେଶ ଯାହା ପାଇଁ ଏତେ ଲୋକ୍ ଜୀବନ ଦେଇଥିଲେ ?" ପଚାରୁଥିଲା ଗଙ୍ଗା ମାଝୀ । ଗଙ୍ଗା ମାଝୀର ହାତରେ ବାଜିଥିଲା ପୁଲିସର ଗୁଳି । କାରଣ ସେ କମ୍ପାନୀର ଜମି ଅଧିଗ୍ରହଣକୁ ବିରୋଧ କରୁଥିଲା । ଏବେ ବି ସେ ଲଙ୍ଗଳର କଣ୍ଟିକୁ ଠିକ୍‌ରେ ଧରି ପାରୁନାହିଁ । ଜମି ତା'ର ପଡ଼ିଆ ପଡୁଛି । "କାହାର ଏ ଦେଶ ?" ପଚାରୁଥିଲା ମୁକୁନା ଦିଶାରି । ଏ ଦେଶ ତାକୁ ଦୁଇ ଦୁଇ ଥର ଗିରଫ କରି ଏଗାର ମାସ ଜେଲ୍‌ରେ ରଖିଥିଲା । ସେ ରାତିରେ ସ୍ୱପ୍ନ ଦେଖୁଥିଲା ଗୋଟେ ବିରାଟ ବନ୍ଧୁକ ତା' ଜମିଟାକୁ ଉଠାଇ ନେଇ ପଳଉଚି । ସେ ଜେଲର ଲୁହା ଝରକାକୁ ଭାଙ୍ଗିବାକୁ ଚେଷ୍ଟା କରି ମାତ

ଖାଇଥିଲା । "ସେମାନଙ୍କ ଶାସନ, ସେମାନଙ୍କ ଆଇନ୍ । ମିଛ ସତ ଲଗାଇ କେସ କରିଦେବେ । ମାଜିଷ୍ଟ୍ରେଟ୍ ତାଙ୍କୁ ବିଶ୍ୱାସ କରିବ, ଆମକୁ ନୁହଁ ।" ମୁକୁନ୍ଦି ସାଉଁତା ଆଠ ମାସ ଜେଲ୍ ଖଟି ଆସିଲା ପରଠାରୁ ସଦାବେଳେ ସେଇକଥା କହୁଚି । ଜେଲ୍‌ରୁ ଫେରିଲା ବେଳକୁ ସେ ଦେଖୁଥିଲା, ତା' ବଗିଚାରେ ଗୋଟେହେଲେ ଗଛ ନାହିଁ । ଜମିଟାକୁ ରାମ୍ପି ବଦାରି ଦେଇଛନ୍ତି । ଜଗ ମାଝୀ ବିଶ୍ୱାସ କରୁନଥିଲା ଯେ ଜଜ୍ ମଧ୍ୟ କମ୍ପାନୀ ଠାରୁ ଟଙ୍କା ନେଇଥିବେ । ଆଦିବାସୀର ଜମିକୁ ଅଣଆଦିବାସୀ ନେଇ ପାରିବ ନାହିଁ । ଏ କଥା ଆଇନ୍ କହୁଚି । ଏ ଦେଶର ନ୍ୟାୟାଳୟ କିନ୍ତୁ ଜଗ ମାଝୀକୁ ନ୍ୟାୟ ଦେଇ ପାରିଲା ନାହିଁ । ହାଇକୋର୍ଟରୁ କେବେ ଚିଠି ଆସିବ ଯେ ସେ କେସ୍‌ରେ ଜିତିଛି । ସେ କଥାକୁ ଅପେକ୍ଷା କରିକରି ଜଗ ମାଝୀ ମରିଗଲା । "ବୁଦ୍ଧିଜିବୀମାନେ ଭାବିଥାନ୍ତେ, ଆଜି ଯଦି ବର୍ଷା ହେଉ ନାହିଁ, ତେବେ କ'ଣ ପାଇଁ । ସେମାନେ ଭାବିଥାନ୍ତେ ? ଏମାନେ ଯଦି ଆଜି ଲଢୁଛନ୍ତି ତେବେ ଖାଲି ନିଜ ପାଇଁ ନୁହେଁ ଆମ ସମସ୍ତଙ୍କ ପାଇଁ, ଏକଥା ଏ ଦେଶର ବୁଦ୍ଧିଜୀବୀମାନେ ଭାବିଥାନ୍ତେ ।" ଏକଥା ମନୋହର କୁହେ । ସେ ଏହି ଲଢ଼େଇ ଭିତରେ ନିଜର ଝିଅକୁ କେବେ ଠାରୁ ହରାଇ ସାରିଛି । ନିଜେ ମଧ୍ୟ ଜେଲ୍ ଯାଇଛି । ଜେଲ୍ ଯଇଥିବା ମୋର ପ୍ରେରଣା ସେଇ ବୁଲ୍‌କା ମିଣିଆକ୍କା, ଆଧୁନିକ ଓଡ଼ିଶାର ବିର୍ସାମୁଣ୍ଡା । "ଏମାନେ କହୁଛନ୍ତି ଦେଶଟା ଆମର । ଏମାନେ ଜଗିଥିଲେ କି ଏ ପାହାଡ଼କୁ ? ଏମାନେ କ'ଣ କରିଥିଲେ ଏ ଜଙ୍ଗଲ ? ସେମାନେ କ'ଣ ତିଆରି କରିଥିଲେ ଏ ଜମି ? ବାଘ ମୁହଁରେ ଜୀବନ ଦେଇ ଆମେ ତିଆରି କରିଛୁ ଏ ଜମିକୁ । ଆଜି କେମିତି ଛାଡ଼ିଦେବୁ ?" ନିଜର ଜମିକୁ ବିକିବାକୁ ମନା କରିବାରୁ ସେ ଚୋରି ଓ ଡକାୟତି କେସ୍‌ରେ ଛ'ମାସ ଜେଲ୍ ଖଟି ଜାମିନ୍‌ରେ ଆସିଛନ୍ତି ।

ଏହା ମୋର ପ୍ରଥମ ଗଳ୍ପ ସଂକଳନ । ଏଥିରୁ କେତେକ ଗଳ୍ପ ବିଭିନ୍ନ ଖବରକାଗଜ ଓ ପତ୍ରିକାରେ ପ୍ରକାଶିତ ହୋଇଥିଲେ ମଧ୍ୟ ଏକ ସଂକଳନ ଭାବରେ ପ୍ରକାଶ ପାଇନଥିଲା । ଏହି ଗଳ୍ପ ସଂକଳନର ପ୍ରକାଶନ ଯେ ଜରୁରୀ ତା'ର ଆବଶ୍ୟକତା ମୋର ବନ୍ଧୁ ତଥା ଗାଳ୍ପିକ ଭୀମ ପୃଷ୍ଟି ଅନୁଭବ କରିଥିଲେ ଓ ମୋତେ କାମରେ ଲଗାଇ ଦେଇଥିଲେ । ତାଙ୍କୁ ଧନ୍ୟବାଦ । ମୋର ସମସ୍ତ ଗଳ୍ପ ଉପରେ ତୀକ୍ଷ୍ଣ ମନ୍ତବ୍ୟ ରଖି ଏହାକୁ ଆହୁରି ଜୀବନ୍ତ କରିବାରେ ସାହାଯ୍ୟ କରିଥିବା ମୋର ବନ୍ଧୁ ନିଗମ, ପବିତ୍ରମୋହନ ଦାଶ, ସରୋଜ, ରବିଶଙ୍କର, କୁମାର ହସନ୍, ଦେବୀପ୍ରସନ୍ନ, ଶୈଳେନ୍, ସ୍ୱପ୍ନା, ସୁଜାତା, ଭଗମାନ୍ ମାଝୀ,

ସୁମିତ୍ରା, କେଦାର ମିଶ୍ର ଓ ବିନୋଦ ଇତ୍ୟାଦିଙ୍କୁ ଅଶେଷ ଧନ୍ୟବାଦ । ରାୟଗଡ଼ା ଜେଲ୍‌ଅନ୍ତେବାସୀ ରାମଦାଶ ହାରକା ନିଜର ରେଖାଙ୍କିତ ଚିତ୍ରଟି ମୋତେ ଉପହାର ଦେଇଥିଲେ । ଏହି ପୁସ୍ତକର ପ୍ରଚ୍ଛଦରେ ତାଙ୍କର ଚିତ୍ରଟି ସ୍ଥାନିତ ହୋଇଛି । ପ୍ରକାଶନର ଦାୟିତ୍ୱ ନେଇଥିବା ହେତୁ 'ପ୍ରବାହ' ପ୍ରକାଶନର ମୁଖ୍ୟ ତଥା କବି ରମେଶ ପତିଙ୍କ ପ୍ରତି ମୁଁ କୃତଜ୍ଞ ।

- ଦେବ ରଞ୍ଜନ

## ଗଳ୍ପକ୍ରମ...



❑❑❑

# ଝଞ୍ଜାବତୀ

କୋରାପୁଟ ଜେଲ୍ ସାମ୍ନା ବେଶ୍ ଶୋକାକୁଳ ହୋଇଗଲା । ବାପ ଝିଅ ଦୁହେଁ ପରସ୍ପରକୁ କୁଣ୍ଢେଇ ଧରି କାନ୍ଦୁଥିଲେ । ଏତେ ଦିନର ଅପେକ୍ଷା ଆଗରେ ଆଖିର ଲୁହ ଯେମିତି କମ ପଡ଼ିଯାଇଛି । ଉଭୟଙ୍କ ଆଖିରୁ ଧାର ଧାର ହୋଇ ଲୁହ ବୋହିଯାଉଛି, ବନ୍ଦ ହେବାର ନାମ ନେଉନାହିଁ । ବାପ ଝିଅଙ୍କର କାନ୍ଦ ଜେଲ୍ ବାହାର ଗେଟ ସାମନାକୁ ନୀରବ କରିଦେଇଛି । ପୁଲିସ ଭ୍ୟାନର ଡ୍ରାଇଭର, ସୁରକ୍ଷା କର୍ମୀ ସମସ୍ତେ ଯେମିତି ବ୍ୟସ୍ତ ହେଲେଣି । କିନ୍ତୁ ସମସ୍ତେ ଥମ୍ କରି ରହିଯାଇଛନ୍ତି ଯେପରି । ସେପଟେ କୋର୍ଟ ସମୟ ହୋଇଯାଉଛି ।

ବାପ ଝିଅ ଦୁହେଁ ଜାଣିଥିଲେ ସେମାନେ ସେହି କୋରାପୁଟ ଜେଲ୍‌ରେ ବନ୍ଦୀ । ମଝିରେ ଏ କାନ୍ଥଟା । କାନ୍ଥର ଏପଟେ ରହି ସୁନ୍ଦୀ କେତେଥର କାନ ଡେରିଛି ଆରପଟେ ବାପା ଅର୍ଜୁନ କାଡ୍ରାକାର କଥା ଟିକିଏ ଶୁଣାଯିବ କି ? ତାହାହେଲେ ସେ ତା'ର କଥା ଗୁଡ଼ିକ ବାପା ପାଖରେ ପହଞ୍ଚାଇ ଦିଅନ୍ତା । ବାପା କଣ ଜାଣିଥିବ ଘରର କଥା, ମା'ର କଥା, ମାକୁ ଜ୍ୱର ହେବା କଥା ? ବାପା ତ ଆଜକୁ ଚାରି ମାସ ଜେଲ୍‌ରେ ।

ଅର୍ଜୁନ ସେପଟେ କାନ୍ଥରେ କାନ ଦେଇ ଶୁଣିବାକୁ ଚାହିଁଛି ସୁନ୍ଦୀର କଥାକୁ । ହୁଏତ କେଉଁ ଆୟା ସହିତ କଥାବାର୍ତ୍ତା କରୁଥିବ କି ରାଗିକରି ଫୋପାଡୁଥିବ ଥାଳି କି ଗିନା । ନହେଲେ କାନ୍ଦୁଥିବ କେଉଁ ଗଛ ତଳେ । ହେଲେ ଜେଲ୍‌ର ପ୍ରାଚୀରଟା ଏତେ ମୋଟା ! ଅର୍ଜୁନ କାଡ୍ରାକା ଖବର ପାଇଛି । ତା'ର ଝିଅ ସୁନ୍ଦୀ ଦଶ କି ବାର ଦିନ ହେଲାଣି ଏହି ଜେଲ୍‌ରେ ବନ୍ଦୀ । ଖାଲି ସେ କି ତା ଝିଅ ନୁହେଁ, ଗଲା ଛଅ ମାସ ମଧ୍ୟରେ ଆଖ ପାଖ ଗାଁର ସ୍ତ୍ରୀ ପୁରୁଷଙ୍କୁ ମିଶାଇ ଶହେ ବାର ଜଣ ଆଜି କୋରାପୁଟ ଜେଲ୍‌ରେ । ସେଥିରୁ ତା' ନିଜ ଗାଁ ପୋଡ଼ାପଦରରୁ ତାକୁ ମିଶାଇ ଏକଚାଳିଶ ଜଣ । ଆଜି କୋର୍ଟରେ ତାରିଖ ଅଛି । ସମାନ ଅଭିଯୋଗରେ ଏମାନେ ବନ୍ଦୀ । ପ୍ରତି ପନ୍ଦର ଦିନରେ ଲକ୍ଷ୍ମୀପୁର ମାଜିଷ୍ଟ୍ରେଟ ଆଗରେ ପୁଲିସ ସମସ୍ତଙ୍କୁ ହାଜର କରାଇ ଦେଖାଇବ ଯେ ସେମାନେ ଜୀବିତ । ଏ ଭିତରେ ମରିଯାଇନାହାନ୍ତି, ସେମାନେ ଅପେକ୍ଷା କରିଛନ୍ତି ଜାମିନକୁ, ନଚେତ ସଜାକୁ । ସରକାରଙ୍କ ପୁଲିସ କହୁଛି

ସେମାନଙ୍କର ଦୋଷ ହେଲା ଯେ ସେମାନେ ସେହି ବଡ଼ ଦେଶ ବିରୁଦ୍ଧରେ ଯୁଦ୍ଧ କରୁଥିଲେ । ଜଜ୍ ମହାନୁଭବ ନିଷ୍ପତ୍ତି ନେବେ ଏବଂ ଶୁଣାଇବେ ତାଙ୍କ ରାୟ । ସେହି ରାୟକୁ ଅପେକ୍ଷା କରିଛନ୍ତି ଅର୍ଜୁନ ଓ ଅନ୍ୟମାନେ ।

ଆଜକୁ ଛ ମାସ ତଳେ ଅର୍ଜୁନ ଓ ଆଉ ଶହେଚାଳିଶ ଜଣଙ୍କ ନାମରେ ପୁଲିସ ଅଭିଯୋଗ ଫର୍ଦ୍ଦ ଦାଏର କରିସାରିଛି । "ଦେଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା" କରୁଥିଲେ ବୋଲି ନାରାୟଣପାଟଣା ପୁଲିସ ଥାକ ଥାକ କରି ବାନ୍ଧି ଆଣି ଲକ୍ଷ୍ମୀପୁର କୋର୍ଟରେ ହାଜର କରାଇଥିଲା । ଏହା ସହିତ ଡକାୟତି, ଘରଭଙ୍ଗା, ଜୀବନରେ ମାରିଦେବା ପାଇଁ ଧମକ, ପୁଲିସକୁ ବିରୋଧ, ଦେଶ ବିରୁଦ୍ଧରେ ସ୍ଲୋଗାନ ପରି ଆହୁରି ସଙ୍ଗୀନ ଚାର୍ଜ ପୁଲିସ ଲଗାଇଥିଲା । ପ୍ରତିଥର ଲକ୍ଷ୍ମୀପୁର କୋର୍ଟରେ ପୁଲିସ ସେମାନଙ୍କୁ ହାଜର କରେ । ପରେ ଜଜ୍ ସାହେବ ଥାକ ଥାକ କରି ପୁଣି ସମସ୍ତଙ୍କୁ ଜେଲ୍ ପଠାଇଦିଅନ୍ତି ।

ନିଜର ଆରେଷ୍ଟ ପରଠାରୁ କିନ୍ତୁ କେବେ ବି ଅର୍ଜୁନ ପୁଲିସ ଦ୍ୱାରା ଆରୋପିତ ଦୋଷକୁ ମାନିବାକୁ ପ୍ରସ୍ତୁତ ହୋଇ ପାରୁ ନଥିଲା । ସେଇଟା କେଉଁ ଦେଶ ? ତା' ମନକୁ ସେ ଏ ଭିତରେ ଶହେ କି ହଜାରେ ଥର ପଚାରି ସାରିଥିବ । ଯେଉଁ ଦେଶ, ଯେଉଁ ମାଟିକୁ ଚାହିଁ ତା' ଭଳି କନ୍ଧ କି ପରଜା ଆଦିବାସୀ ତା' ନିଜକୁ ଦେଶିଆ କହୁଛନ୍ତି, ସେହି ଦେଶ ବିରୁଦ୍ଧରେ ସେମାନେ ଲଢେଇ କରିନାହାନ୍ତି । ସେଇଟା ତ ସେହି ଯେଉଁ ଡଙ୍ଗର, ତା ପଛକୁ ଜଙ୍ଗଲ, ଆଉ ତା ପାଖ ଦେଇ ବହିଆସିଛି ଝଞ୍ଜାବତୀ ନଦୀ । ଝଞ୍ଜାବତୀ ନଦୀର ପଥରକୁ ପଥର ଡେଇଁ ନଦୀ ପାରିହେଲେ ନାରାୟଣପାଟଣା । ହାଟ ଦିନକୁ ହାଟ ଦିନ ଆଦିବାସୀ ଆସନ୍ତି ବଜାରକୁ, ସେହି ଦିନ କମାର ପାଖରେ ଦା' କି ଲଙ୍ଗଳ ମୁନ ସଜାନ୍ତି । ନିଜର ଚିରି ଯାଇଥିବା ଲୁଗା କି ସାର୍ଟସିଆନ୍ତି । ନିଜର ମକା କି ମାଣ୍ଡିଆ, ଅବା ବାଡ଼ିର ଶାଗ, କଖାରୁ, ବାଇଗଣ, ଭେଜି ଟମାଟୋ ବିକ୍ରି କରନ୍ତି । ସେହି ପଇସାରେ ତେଲ, ଲୁଣ, ଶୁଖୁଆ କିଣନ୍ତି । ସୁନ୍ଦ୍ରୀକୁ ମଧ୍ୟ ଭଲ ଲାଗେ ଚୁଡ଼ି ଦେଖି ଦର ପଚାରିବାକୁ । କେବେ କେମିତି ମାଳିଟାକୁ ମିଛିମିଛିକା ବେକରେ ପକେଇ ପୁଣି ଦର ହେଲା ନାଇଁ ବୋଲି ଦୋକାନୀକୁ ଫେରାଇ ଦିଏ, ପୁଣି ସାହୁ ପାଖରୁ ପକୁଡ଼ି ଆଉ ଜିଲାପି କିଣିବାକୁ ଧାଏଁ ।

ସନ୍ଧ୍ୟା ହେବା ସହିତ ହାଟ ସରିଆସେ । ଆଉ ତା ସହିତ ନାରାୟଣପାଟଣା ଉପରେ ଆଦିବାସୀର କର୍ତ୍ତୃତ୍ୱ ମଧ୍ୟ । ହାଟ ଦିନ ଛାଡ଼ିଲେ ବାକି ଛ'ଦିନ ନାରାୟଣପାଟଣା ବଜାରରେ କେବଳ ସାହୁକାରମାନେ ଭରିଯାନ୍ତି । ସେମାନେ ନିଜର କର୍ତ୍ତୃତ୍ୱ ଦେଖାନ୍ତି । ଅର୍ଜୁନ କାଡ୍ରାକା ଜାଣେ, ସାହୁକାରର ଅତ୍ୟାଚାର ସହି ନପାରି ତା'ଭଳି ଆଦିବାସୀ ସେହି ସାହୁକାରମାନଙ୍କ ବିରୁଦ୍ଧରେ ଲଢୁଛନ୍ତି । ହେଲେ ନିଜ ଏଫଆଇଆରରେ ପୁଲିସ କହୁଛି, 'ଅର୍ଜୁନ କାଡ୍ରାକା, ପିତା : ରୁପା କାଡ୍ରାକା, ଧର୍ମ:-ହିନ୍ଦୁ, ଜାତି:-ଆଦିବାସୀ ଲିଙ୍ଗ:-ପୁରୁଷ, ଜାତୀୟତା:-ଭାରତୀୟ, ଜନ୍ମ:-୧୯୭୦, ଅଭିଯୋଗ:-ଚୋରୀ, ଡକାୟତି, ଘର ଭାଙ୍ଗିବା, ସରକାର ବିରୋଧୀ

ସ୍ଲୋଗାନ ଦେବା, ରାବଣା ରାଓକୁ ମାରିବାକୁ ଧମକ ଦେବା, ବର୍ଚ୍ଛା, ଟାଙ୍ଗିଆ, କଟୁରି ଧରି ରାଷ୍ଟ୍ର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଭାରତୀୟ ପିଙ୍ଗଲ କୋର୍ଡର ଧାରା ୧୨୧/୧୨୩/ ୧୪୭/୧୪୮/୧୪୯/୩୦୫/୫୧୬ ଅନୁସାରେ ଦୋଷୀ । ଅର୍ଜୁନ ନାମରେ ଏବେ ୧୦ଟି ମକଦ୍ଦମା । କିନ୍ତୁ ଅର୍ଜୁନ କହୁଛି- 'ଭୋଟର ତାଲିକାରେ ନାମ ଲେଖା ହେବା ଦିନୁ ସେ ଭୋଟ ଦେଇ ଆସୁଛି ଓ ସେଥିରେ ସରକାର ତିଆରି ହେଉଛି । ସେ ପ୍ରତିବର୍ଷ ଆରଆଇ ପାଖରେ ତା' ଜମିର ସିସ୍ତ ବାନ୍ଧୁଛି, ଆଉ ସେଥିରେ ସରକାର ଚାଲୁଛି । ସେ ନିଜେ ପୋଡ଼ାପଦର ପ୍ରାଇମେରୀ ସ୍କୁଲ ଗ୍ରାମ୍ୟ କମିଟିର ସଭାପତି ଓ ନିଜ ୱାର୍ଡର ପୁରୁଣା ମେମ୍ବର ମଧ୍ୟ । ସେ ସରକାରଙ୍କ ସମସ୍ତ ଯୋଜନାର କାର୍ଯ୍ୟକାରିତା ପାଇଁ ମଧ୍ୟ ଉଦ୍ୟମ କରିଛି । କାରଣ ସେ ଜାଣିଛି ତା' ଅଞ୍ଚଳର ଲୋକେ ଗରିବ ଓ ସରକାର ଚାହିଁଲେ ଲୋକେ ନିଶ୍ଚେ ଭଲରେ ରହିବେ । ସେ ଭାବିଥିଲା ସରକାର ତାଙ୍କମାନଙ୍କ ପାଇଁ ମା' ବାପା । ସେ କେବଳ ନିଜେ ନିଜେ ଭାବି ନଥିଲା । ତାକୁ ଏପରି ଭାବିବା ପାଇଁ ଅଞ୍ଚଳକୁ ଆସୁଥିବା ସରକାରୀ ଅଫିସର, ଶିକ୍ଷକ, ନେତା ସମସ୍ତେ କହୁଥିଲେ । ସେ ବିଶ୍ୱାସ ମଧ୍ୟ କରୁଥିଲା ଯେ ଭୁବନେଶ୍ୱରରେ ଥିବା ସରକାର ଚାହିଁଲେ ତାକୁ ନ୍ୟାୟ ନିଶ୍ଚୟ ମିଳିବ । ସେହି ନ୍ୟାୟ ପାଇବା ଆଶାରେ ସେ ଓ ତା' ଗାଁର ଲୋକେ ମିଶି ରାବଣା ରାଓକୁ ବିରୋଧ କରିଥିଲେ । ମାତ୍ର ସେମାନେ କେବେ ତା'ର ଘର ଭାଙ୍ଗିନାହାନ୍ତି କି ତା'ର ଘରୁ ଡକାୟତି କରିନାହାନ୍ତି । ପୁଲିସର ମକଦ୍ଦମା କେବଳ ସାହୁକାରଙ୍କୁ ସୁରକ୍ଷା ଦେବା ପାଇଁ । କିନ୍ତୁ ତା'ର ଏ କଥା ଶୁଣିବାକୁ କେହି ନାହାନ୍ତି । ତେଣୁ ଅର୍ଜୁନ ବୁଝିସାରିଥିଲା ଯେ ସାହୁକାରମାନଙ୍କର ଥାନା ଓ ଥାନା ବାବୁ । ସେହି ସାହୁକାରମାନେ ଏବେ ସେମାନଙ୍କୁ ନେଇ ଆସିଲେ ଜେଲ୍‌କୁ । ସେହି ସାହୁକାର ଦେଶର ଜେଲ୍‌ରେ ଆଜି ଦେଶିଆ ଆଦିବାସୀ ବନ୍ଦୀ ।

ଆଉ ବେଶି ସମୟ ଅପେକ୍ଷା ନକରି ପୁଲିସ ବାପ ଝିଅ ସମସ୍ତଙ୍କୁ ତିନିଟି ଭ୍ୟାନ୍‌ରେ ଜବରଦସ୍ତି ଭରିଲା । ଆଗରେ ସିଆରପିଏଫର ଭାରିଯାନ, ପଛରେ ଆଉ ଗୋଟେ । ପୁଲିସର ବନ୍ଧୁକର ମୁହଁ ସବୁ ବାହାରକୁ, କଡ଼ା ସୁରକ୍ଷା ବ୍ୟବସ୍ଥା । ବାଟରେ କାଳେ ମାଓବାଦୀମାନେ ଅଚାନକ ହମ୍‌ଲା କରି ସେମାନଙ୍କ କ୍ୟାଡରମାନଙ୍କୁ ଛଡ଼ାଇ ନେବେ, ସମସ୍ତ ପ୍ରକାରର ଉଦ୍ୟମକୁ ନକାମ କରିବା ପାଇଁ ସିଆରପିଏଫର କମାଣ୍ଡର ହିନ୍ଦୀ ମିଶା ଓଡ଼ିଆରେ ଆଗରୁ ନିର୍ଦ୍ଦେଶ ଦେଇସାରିଛନ୍ତି । ପାଞ୍ଚଟି ବିଶାଳ ଭ୍ୟାନ୍ କୋରାପୁଟ ଛାଡ଼ିସାରିଲାଣି । ସମସ୍ତେ ଏବେ ଲକ୍ଷ୍ମୀପୁର ଅଭିମୁଖେ ଚାଲିଛନ୍ତି ।

ଏ ସବୁ କିନ୍ତୁ ସୁନ୍ଦୀକୁ ନୂଆ ଲାଗୁଥିଲା । ଏ ଭିତରେ ସେ କାନ୍ଦ ବନ୍ଦ କଲାଣି । ସେ କେବଳ ଗାଡ଼ି ଭିତରକୁ ଏବଂ ବାହାରକୁ ଚାହୁଁଛି । ଏଇଟା ତାର ପ୍ରଥମ ହାଜିରା । ସେ ପାଠୋଇ ଝିଅ । ଗିରଫ ହେବା ସମୟକୁ ସେ ସପ୍ତମ ଶ୍ରେଣୀରେ ପଢୁଥିଲା । ସେ ବୁଝିଥିଲା ଏ ଦେଶ ନୁହେଁ, ଯାହାକୁ ସେ ଗାଁ ଚାରିପାଖେ ଦେଖୁଛି, କି ବେଳୁଣିର ଗୀତରେ ଶୁଣିଛି କ

ନିଲାବାଡ଼ି ଯାତ୍ରାରେ ପାଇଛି । ଏ ହେଉଛି ସେହି ଦେଶ ଯାହାକୁ ସେ ତ୍ରିରଙ୍ଗା ପତାକା ସହିତ ସ୍କୁଲର ବହିରେ ଥିବା ଛବିରେ ଦେଖିଛି । ଅଗଷ୍ଟ ପନ୍ଦର କି ଜାନୁଆରୀ ଛବିଶ ଆସିଲେ ସେ ମଧ୍ୟ ଅନ୍ୟ ସମସ୍ତଙ୍କ ସହିତ ସ୍କୁଲ ସାମ୍ନା ସେହି ତ୍ରିରଙ୍ଗା ପତାକା ତଳେ "ଜନଗଣ ମନ ଅଧିନାୟକ ଜୟ ହେ" ବୋଲି ବଡ଼ ପାଟିରେ ଗାଇଛି । ସ୍କୁଲର ଅନ୍ୟ ପିଲାଙ୍କ ସହିତ "ଭାରତମାତା କି ଜୟ", "ମହାତ୍ମାଗାନ୍ଧୀ କି ଜୟ", "ଜବାହାରଲାଲ ନେହେରୁ କି ଜୟ", "ଗୋପବନ୍ଧୁ ଦାସ କି ଜୟ" କହି ସେ ମଧ୍ୟ କେତେ ସ୍ଲୋଗାନ ଦେଇଛି । ଇଂରେଜମାନଙ୍କର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ହେଲା । ଏ ଦେଶ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନ ହେଲା ବୋଲି ସ୍କୁଲ ବହିରେ ପଢ଼ିଛି । ସୁନ୍ଥୀର ମୁଣ୍ଡ ଘାବରେଇ ଗଲା ସେହି ଦିନ, ଯେଉଁ ଦିନ ମାଜିଷ୍ଟ୍ରେଟ ଆଗରେ ପୁଲିସ ପ୍ରଥମେ ଥାନାରୁ ଆଣି ହାଜର କରାଇ ତା' ବିରୁଦ୍ଧରେ ଲାଗିଥିବା ଦଫାରେ କହିଲା "ସୁନ୍ଥୀ କାତ୍ରାକା, ପିତା :-ଅର୍ଜୁନ କାତ୍ରାକା, ଗ୍ରାମ :-ପୋଡାପଦର, ଆଦିବାସୀ, ମହିଳା, ଜନ୍ମ:- ୧୯୯୨, ଧାରା ୧୨୧/୩୦୫/୫୧୬ ଅଫ୍ ଆଇପିସି ଓ ୟୁଏପିଏର ଧାରା ୧୬,୧୮,୨୦ ଅନୁସାରେ ଦେଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି । ସେ ଡକାୟତି କରିଛି, ଜୀବନରେ ମାରିଦେବାକୁ ଧମକ ଦେଇଛି । ପ୍ରାୟ ଚାଳିଶଜଣଙ୍କ ସହିତ ଆସି ରାବଣା ରାଓ ଉପରେ ଆକ୍ରମଣ କରିଛି ।" ସେ ଦିନ ଦେଶ କହିଲେ ସେ ବୁଝି ଯାଇଥିଲା ଯେ ସେହି ଯେଉଁଟା ସେ ନାରାୟଣପାଟଣା ବଜାରରେ ହାଟ ଦିନକୁ ଛାଡିଦେଲେ ବାକି ଦିନରେ ଦେଖିଛି । ସେମାନଙ୍କ ବିରୋଧ ଥିଲା ସାହୁକାରକୁ । ଏବେ ସେହି ସାହୁକାର ପୁଲିସକୁ ବଟି ଦେଇ ତାକୁ ମଧ୍ୟ ନେଇ ଆସିଲା କୋରାପୁଟ ଜେଲ୍‌କୁ ।

ଘରେ ତାର ରୋଗିଣା ମା', ଝାଡ଼ାବାନ୍ତିକୁ ପୁଣି ଜ୍ୱର, ଶେଯରୁ ଉଠିପାରୁନଥିଲା । ସୁନ୍ଥୀ ସକାଳୁ ସକାଳୁ ଲୁଚି କରି ଆସିଥିଲା ନାରାୟଣପାଟଣା ଡାକ୍ତରଖାନାରୁ ଔଷଧ ନେବା ପାଇଁ । ଡାକ୍ତରଖାନା ଖୋଲୁ ଖୋଲୁ ଔଷଧ ମାଗି ଆଣିବ ବୋଲି ବଡ ସାହସରେ ଘରୁ ଏକୁଟିଆ ଦୁଇ କିଲୋମିଟର ଝୋଲା ରାସ୍ତା ଦେଇ ଚାଲି ଆସିଥିଲା । ହେଲେ ପୁଲିସକୁ କେହି ଜଣେ ଚିହ୍ନାଇ ଦେଲା । ଡାକ୍ତରଖାନା ଗେଟ ପାଖରେ ସେ ଠିଆ ହୋଇଥିବା ବେଳେ ପୁଲିସ ସାଦା ପୋଷାକରେ ତା'କୁ ଚାରିପାଖରୁ ଘେରିଗଲେ ଓ ଜିପ୍‌ରେ ବସାଇ ନେଇଗଲେ ଥାନାକୁ, ଥାନାର ସେ ଲୁହା ଜାଳିଦିଆ ଅନ୍ଧାର ଘରକୁ ଠେଲିଦେଇ ତାଲା ପକାଇଦେଲେ । ସେତେବେଳେ ଡରରେ ସୁନ୍ଥୀର ପାଟିରୁ କଥା ବାହାରୁ ନଥିଲା । ମା'ର କଥା ମନେ ପଡ଼ିଯିବାରୁ ଜୋରରେ ପୁଣି କାନ୍ଦିବାକୁ ଲାଗିଥିଲା । ମା'ର ବେମାରୀ ମୁହଁ ତା'ର ବାରମ୍ବାର ମନେ ପଡୁଥିଲା । ମା' କଣ ସତରେ ଖବର ପାଇଯିବଣି, ସେହିକଥାଟା ତାକୁ ବ୍ୟସ୍ତ କରୁଥିଲା ?

ସେଦିନ ଗ୍ରୀଲ ଦେଇ ସୁନ୍ଥୀ ବାହାର ଘରଟିକୁ ଚାହିଁଲା । ବେଶ କିଛି ପୁଲିସ ଯିବା ଆସିବା କରୁଛନ୍ତି । ଡରରେ ସେ ଆଣ୍ଠୁ ସନ୍ଧିରେ ମୁହଁ ରଖି ଜୋରରେ କାନ୍ଦିଲା । ତାକୁ ଭୀଷଣ

ଡର ମାଡୁଥିଲା । ଏ କଣ ସେହି ଜାଗା ଯେଉଁଠି ଖରାପ କାମ କରିବାବାଲାକୁ ଡୁମା ନେଇଯାଇ ଲୁଚାଇ ଦିଏ ବୋଲି ତା'ର ଜେଜେ କେତେ ଥର ତାକୁ ଡରାଉଥିଲେ । ଗୋଟା ଲୁହାର ଗ୍ରୀଲ, ଗ୍ରୀଲର କେଁ କେଁ ଶବ୍ଦ, ଭିତରଟା ପୁରା ଅନ୍ଧାର, ତା' ସାଙ୍ଗକୁ ମୂଷାର ଗନ୍ଧ... । ତାହେଲେ ଜେଜେ କ'ଣ କେବେ ଏ ଘରେ ତା' ଭଳି ବନ୍ଧା ହୋଇଥିଲା ନା ତାକୁ କେବଳ ଡରାଇବାକୁ କହୁଥିଲା ? ମଝିରେ ମଝିରେ ପୁଲିସର ଭାରି ବୁଟ୍ ଶବ୍ଦ ସାଙ୍ଗକୁ କାନ୍ଥ ଘଣ୍ଟାର ଢଂ ଢଂ ଶବ୍ଦ ତା'କୁ ଭୟର ସାମ୍ରାଜ୍ୟ ମଧ୍ୟକୁ ନେଇଯାଉଥିଲା । ଏମାନେ ପୁଣି କ'ଣ କରିବେ, ମାରିଦେବେ ନା ଛାଡ଼ିଦେବେ, ନା କୁଆଡ଼େ ପଠାଇ ଦେବେ ଏକଥା ସେ କିଛି ଜାଣି ପାରୁନଥିଲା ।

ଦିନ ମଝାମଝିକି ତାର ଫଟୋ ନେବା ପାଇଁ ବଜାରର ଷ୍ଟୁଡିଓବାଲା ଆସିଥିଲା । ସୁନ୍ଦ୍ରୀ ଫଟୋ ତା'କୁ ଚିହ୍ନିଲା । ଅଲଜ୍ଞା ଟୋକାଟା । ତା'ର ଦୋକାନକୁ ଥରେ ସ୍କୁଲ ସାଙ୍ଗଙ୍କ ସହିତ ଫଟୋ ଉଠାଇବା ପାଇଁ ଯାଇଥିଲା । ତା' ଦେହରେ ଘଷି ହୋଇ ଥରେ ଦୁଇ ଥର ଯିବା ଆସିବା କଲା । ଥରେ ସମ୍ଭାଳିବା ପରେ ଦ୍ୱିତୀୟ ଥରକ ସୁନ୍ଦ୍ରୀ ତା'କୁ ଠେଲି ଦେଲା । "ନୁନି ଜାଣି ପାରିଲିନି" ବୋଲି ମିଛରେ ଫାଙ୍କି ଦେଇଥିଲା । ସେହି ଫଟୋବାଲା ଏବେ ତା'ର ଫଟୋ ନେଲା ବେଳେ କହିଦେଇଗଲା, "ତୁ ମାଓବାଦୀ" । ସୁନ୍ଦ୍ରୀର ଛାତି ଧଡ଼କିନା କରିଗଲା । ନିଜେ ବିଶ୍ୱାସ କରି ନପାରିଲେ ମଧ୍ୟ ସେ ବୁଝିପାରିଲା ଯେ ଏବେ ମାଓବାଦୀ କେସ୍‌ରେ ସେ ବନ୍ଦୀ । ପୁଲିସବାଲା ଲକ୍ଷ୍ମୀପୁର କୋର୍ଟରେ ସୁନ୍ଦ୍ରୀକୁ ହାଜର କରାଇ ସେହି ଦିନ ସନ୍ଧ୍ୟା ଆଗରୁ କୋରାପୁଟ ଜେଲ୍‌ରେ ଛାଡି ଦେଇଗଲେ । ଜେଲ୍ କାଗଜରେ ମିଛରେ ଲେଖିଦେଇଗଲେ, ତା'ର ବୟସ ୧୮ ବର୍ଷ ।

କଏଦୀମାନଙ୍କ ଗାଡ଼ି ସବୁ କାକରିଗୁମ୍ଫା ଛକ ପାରି ହୋଇଗଲାଣି । ଏ ଥର କିଛି ବାଟ ରେଳ ଧାରଣା ଦୁଇ ପିଚୁ ରାସ୍ତା ସହିତ ଯୋଡି ହୋଇ ଚାଲିବ । ଟ୍ରେନରେ ଯାଉଥିବା ଲୋକ ଏଇଠି ବସ୍‌ରେ ଯାଉଥିବା ଲୋକଙ୍କୁ ହାତ ହଲାଇ ନିଜର ଗର୍ବ ପ୍ରକାଶ କରନ୍ତି । ସୁନ୍ଦ୍ରୀକୁ ଲାଗିଲା ରେଳ ଧାରଣା ଦୁଇଟି ଯେମିତି ଦୌଡିକରି ପଳାଇ ଯାଉଛନ୍ତି । ଏହାପରେ ଲକ୍ଷ୍ମୀପୁର ଘାଟୀ, ଘାଟୀ ଉଠିଲେ ଲକ୍ଷ୍ମୀପୁର । ସୁନ୍ଦ୍ରୀ ତା'ର ପ୍ରଥମ କରି ନୀରବତାକୁ ଭାଙ୍ଗିଲା । ଭାବିଥିଲା ଗାଁର ଦୁଃଖ କଥା କାହାକୁ କହିବ ନାହିଁ । ହେଲେ ଜୀରା ଦାଦାକୁ ଗାଡ଼ିରେ ଦେଖି ଚୁପ୍ ହୋଇ ରହିପାରିଲା ନାହି । ଜୀରା ଆଡ଼କୁ ଚାହିଁ କହିଲା – "ଦାଦା, ମୁନି ତୁମର ଆଉ ନାହିଁ । ବଗିଚା ଘରେ ଚୂଲିରେ ପଡି ମରିଗଲା ।" ଦୂରରେ ବସିଥିବା ଜୀରା ହାଁ କରି ଉଠିଆସିଲା ସୁନ୍ଦ୍ରୀର ପାଖକୁ । ଗାଡ଼ି ଭିତରେ ଥିବା ଲୋକଙ୍କ ନିଶ୍ୱାସ କିଛି ସମୟ ପାଇଁ ଯେମିତି ବନ୍ଦ ହୋଇଗଲା । ଜୀରାର ଦୁଇ ବର୍ଷର ଝିଅ ମୁନି ମରିବା ଏ ଭିତରେ ମାସେ ବିତିଗଲାଣି । ହେଲେ ଜେଲ୍‌ରେ ଥିବା ବାପାକୁ ଏ କଥା ଜଣାନାହିଁ । କିଏ ଖବର ଦେବ ? ଦେଖା କରିବାକୁ ଯିଏ ଆସିଲେ ତ ପୁଲିସ ତା'କୁ ମାଓବାଦୀ କହି ବସ୍‌ରୁ ନହେଲେ ଜେଲ୍ ସାମନାରୁ ଗିରଫ କରୁଛି ।

ଜୀରା ତା'ର ଛାତିରେ ହାତକୁ ପିଟି ଜୋରରେ କାନ୍ଦିବାରେ ଲାଗିଛି । ବାରମ୍ବାର ତା'ର ମୁଣ୍ଡଟାକୁ ଗାଡ଼ି ସିଟର ଧାରରେ ପିଟିବା ପାଇଁ ଚେଷ୍ଟା କରୁଛି । ଅନ୍ୟମାନେ ଧରି ଦେଇଛନ୍ତି । ମୁନି ତାର ପ୍ରଥମ ଝିଅ । ପୁଲିସ ତାକୁ ଗିରଫ କରି ଆଣିଲା ବେଳେ ବଡ ପାଟିରେ କାନ୍ଦୁଥିଲା । ଛୋଟ ଝିଅକୁ ଦେଖି ମା'ର ଆଖିରେ ମଧ ଲୁହ ଆସିଯାଇଥିଲା । ଜୀରା ତା'ର ବାରମ୍ବାର ସେହି କଥା କହୁଛି, "ମୁନି ମୋର ଚାଲିଗଲା, ତାକୁ ଆଉଥରେ ଦେଖିପାରିଲି ନାହିଁ ?" ଯୁବକ ବୟସ ଜୀରା । ପାଖ ଗାଁ ବାଲିଆପୁଟର ନୀଲାକୁ ଉଦୁଲିଆ ଆଣିଥିଲା । ବାହାଘରର ବର୍ଷକ ପରେ ଝିଅ ତା'ର ।

ଗାଡି ଭିତରେ ସମସ୍ତେ ଯେମିତି ନୀରବ ହୋଇ ଯାଇଛନ୍ତି । ବେଶ କିଛି ଲୋକ ଜୀରାକୁ ଜୋର କରି ଧରିଛନ୍ତି ।

ସୁନ୍ଦ୍ରୀ ଗାଡ଼ି ଭିତରକୁ ଚାହିଁ ଦୁଃଖଦ ଘଟଣାଟିକୁ ବର୍ଣ୍ଣନା କଲା । - "ନୀଲା ଆଓ୍ୱା (ଜୀରାର ସ୍ତ୍ରୀ ସୁନ୍ଦ୍ରୀର ଭାଉଜ ଲାଗିବ) ବଗିଚା ଘରେ ଦିନ ବେଳା ରୋଷେଇ ପାଇଁ ଚୂଲିରେ ନିଆଁ ଦେଇ କାଠ ଦୁଇଟି ଠେଲି ଦେଇଥିଲା । ଚୂଲିରେ ପାଣି ବସେଇ ବଗିଚା ସଫା କରୁଥିଲା । ପୁଲିସ ଡରରେ ଗାଁ ଛାଡ଼ି ବିଲ ବାଡ଼ି, ବଗିଚାକୁ କେହି ଯାଉନଥିଲେ । ନୀଲା ଆଓ୍ୱା ମକା ଗଛରେ ମାଟି ଟେକିବ ବୋଲି ମୁନିକୁ ଖୁଆଇଦେଇ ପାଖ ବାଡରେ କାମ କରୁଥିଲା । ବଗିଚା ଘରେ ମୂଷା ଡେଇଁଲା କି କ'ଣ ଲିଭିଲା ବତୀଟା ଗଡ଼ି ଯାଇ ଚୂଲିରେ ପଡ଼ିଲା । କିରୋସିନି ଟିକେ ଥିଲା । ସେହିଥିରେ ଘର ସାରା ନିଆଁ ଲାଗିଗଲା । ଆଓ୍ୱା ଦଉଡି ଆସି ଝିଅକୁ ଟେକି ନେଲା । ପାଖରେ ଯାହା ଔଷଧ ଥିଲା ଦେଲୁ । ପାଖଗାଁ ଦେଶିଆ ଔଷଧ କି ଡାକ୍ତରଖାନା ଔଷଧ ଲାଗିଥିଲେ ଭଲ ହୋଇଥାନ୍ତା । ସେତେବେଳେ କୁମ୍ବିଙ୍ଗ ଚାଲିଥିଲା । ସିଆରପିଏଫ ବାଲା ଗାଁକୁ ଆସି ଧମକାଇଥିଲେ । ତେଣୁ ଔଷଧ ପାଇଁ ପାଖ ଗାଁକୁ କେହି ଗଲେ ନାହିଁ । "ରାଜ ଆୟା ଯେତିକି ଜାଣି ଥିଲା ଦେଲା । ସେଥିରେ ଭଲ ହେଲା ନାହିଁ । ମୁନିକୁ ପୁଣି ପତଳା ଝାଡ଼ା ହେଲା । ଦୁଇ ଦିନପରେ ଚାଲିଗଲା ।" ପୁଣି ଆଉ ଏକ ଜୀବନ ତୁମା ହୋଇଗଲା । କେହି କିଛି କରିବାର ନାହିଁ । ସେୟା ହିଁ ଯେମିତି ବିଧି ।

ଏଥର ଭ୍ୟାନ ଘାଟୀ ମଝାମଝି ହେଲାଣି । ବାଁ ପାଖ ମୋଡ଼ ପାରି ହେଲେ ଲକ୍ଷ୍ମୀପୁର ଆବାସିକ ସ୍କୁଲ୍ । ସ୍କୁଲ୍‌କୁ ପିଲାଏ ବହି ଧରି ଚାଲିଛନ୍ତି । ଗାଡ଼ି ଭିତରେ ସମସ୍ତେ ନୀରବରେ ଦୋହଲୁଛନ୍ତି । ସିତାନା ଭ୍ୟାନର ଜାଲି ଦେଇ ବାହାରକୁ ଦେଖୁଥିଲା । ସ୍କୁଲ ପିଲାଙ୍କୁ ଦେଖି ସୁନ୍ଦ୍ରୀକୁ ଜୋରରେ ପଚାରିଲା ଯେମିତି ସେ ଭୁଲି ଯାଇଥିବା କଥା ତା'ର ହଠାତ ମନେପଡ଼ିଗଲା । "ଆରେ ତୁମମାନଙ୍କର କିଛି ହେଲା ନାହିଁ । ସେ ଜଙ୍ଗଲବାଲା ଆସି ତୁମ ସ୍କୁଲକୁ ପରା ଉଡାଇ ଦେଲେ ! ଟିଭିରେ ଦେଇଥିଲା ।" ଜେଲ୍ ଭିତରେ ଆଜିକାଲି ଟି.ଭି । ସନ୍ଧ୍ୟା ସାତଟା ହେଲେ ସମସ୍ତେ ଧାଡ଼ିକରି ବସିଯା'ନ୍ତି । ଟିଭିରେ ପୁଲିସ ଗୁଳିକାଣ୍ଡ ଶୁଣିଲେ କେହି ନିରୀହ ଲୋକ ମଲା ବୋଲି ଜାଣି ସେମାନଙ୍କ ମୁହଁ ଶୁଖିଯାଏ । ପୁଣି କିଏ କେଉଁଠ

ପୁଲିସକୁ ମାରିଲେ ସେମାନେ ଜାଣନ୍ତି ଏଥର ସେ ଅଞ୍ଚଳରେ ଆଦିବାସୀଙ୍କ ପାଇଁ ବିପଦ ଆସିଗଲା ।

ସୁନ୍ଥୀ ଯେମିତି ଚାହୁଁଥିଲା ଏକଥା କିଏ ସେ ପଚାରୁ । ସିତାନା ଦାଦାର ପଚାରିବା ଶୁଣି ସୁନ୍ଥୀ ଆରମ୍ଭ କଲା, "ମଝି ରାତି ବେଳକୁ ସେମାନେ ଆସି ପ୍ରଥମେ ଆମ ସାର୍‌ଙ୍କୁ ଉଠାଇଲେ । ତା'ପରେ ସାର୍ ଆସି ଆମକୁ କହିଲେ, ନିଜ ନିଜ ବହି ଖାତା, ବାକ୍ସ, ଲୁଗା ସବୁ ଧରି ବାହାରକୁ ଚାଲି ଆସ । ଆମର ନିଦ ପୂରା ଛାଡ଼ି ଗଲା । ଯାହା ପାଇଲୁ ଟ୍ରଙ୍କରେ ଆଉ ବ୍ୟାଗରେ ଭର୍ତ୍ତି କରି ସ୍କୁଲ ଗେଟ୍ ସାମନାକୁ ଚାଲି ଆସିଲୁ । ବାହାରେ ଦେଖିଲୁ କେତେ ଲୋକ ବନ୍ଧୁକ, ଟର୍ଚ୍ଚ ଧରି ଛିଡ଼ା ହୋଇଛନ୍ତି । କେତେ ଲୋକ ହେବେ କେଜାଣି । ସେମାନେ ଆମକୁ ଡର ନାହିଁ, ଡର ନାହିଁ ବୋଲି କହିଲେ । ଆଉ କହିଲେ- "ତୁମ ସ୍କୁଲରେ ସିଆରପିଏଫ ରହିବା ପାଇଁ ସରକାର ଚାହାଁନ୍ତି । ତୁମକୁ ବାହାର କରି ସରକାର ସେମାନଙ୍କୁ ରଖିବେ ।" ଆମେ ବାକ୍ସ ଓ ବହି ଧରି ରାସ୍ତା କଡ଼କୁ ଚାଲିଗଲୁ । ତାପରେ ଏତେ ଜୋରରେ ଶବ୍ଦ ହେଲା ଯେ ଯେମିତି କାନ ଫାଟିଯିବ । ଚାରିଥର ସେମିତି ହେଲା । ତାପରେ ସେମାନେ 'ସିଆରପିଏଫ୍ ମୁର୍ଦ୍ଦାବାଦ, ସଂଘ ଜିନ୍ଦାବାଦ'- କହି ଅନ୍ଧାରରେ ଜଙ୍ଗଲକୁ ପଳାଇଗଲେ । ଆମେ ସବୁ ସେମିତି ରାତି ସାରା ରାସ୍ତାରେ ବସିଲୁ । ବହୁତ ଡର ଲାଗୁଥାଏ । କିଛି ଗାଡି ମୋଟର ନାହିଁ । ଯେମିତି ରାତି ପାହି ଟିକେ ଫାଙ୍କା ହେଲା ଦେଖିଲୁ ସ୍କୁଲଟା ପୁରା ମାଟିରେ ମିଶିଯାଇଛି । ସ୍କୁଲକୁ ଦେଖି କାନ୍ଦ ଲାଗିଲା । ଆଉ କେବେବି ପାଠ ପଢ଼ି ପାରିବୁ ନାହିଁ ବୋଲି ଭାବିଲି । ସାର୍ ବି ଆମ ସହିତ କାନ୍ଦି ପକେଇଲେ । ଯେମିତି ପୂରା ଦିନ ହେଲା ସେମିତି ପୁଲିସ ଗାଡି ସବୁ ଆସିଲା । ସେମାନେ ଆମକୁ ନିଜ ନିଜ ଗାଁକୁ ଚାଲିଯିବା ପାଇଁ କହିଲେ । ଆମେ କାନ୍ଦି କାନ୍ଦି ଚାଲିଆସିଲୁ ।"

ଏଥର ଭ୍ୟାନ ସବୁ ଲକ୍ଷ୍ମୀପୁର କୋର୍ଟ ପାଖାପାଖି ପହଞ୍ଚିଯାଇଥିଲା । ଆଗ ଓ ପଛ ଗାଡ଼ିରୁ ବନ୍ଧୁକଧାରୀ ପୁଲିସମାନେ ଖପ୍ ଖାପ୍ ଡେଇଁ ଲୋକମାନଙ୍କୁ ଆଡ଼େଇବାରେ ଲାଗିଲେ । ଅଳ୍ପ ସମୟରେ କୋର୍ଟ ସାମ୍ନା ଖାଲି ହୋଇଗଲା । ସୁନ୍ଥୀ ଆଉ କିଛି କହିଥାନ୍ତା, ଏଥର କଥା ସାରି ତୁନି ହୋଇଗଲା । ସମସ୍ତଙ୍କ ମୁହଁରେ ପୁଣି ଆତଙ୍କ, ସମସ୍ତଙ୍କ ହାତରେ ହାତକଡ଼ି ।

ଭ୍ୟାନରୁ ଜଣକ ପରେ ଜଣେ ଓହ୍ଲାଉଥାନ୍ତି । ଦଶ ଦଶ ଜଣରେ ଗୋଟିଏ ଦଳ କରି ସେମାନଙ୍କୁ ହାବିଲଦାର ଗୋଟେ ମୋଟା ଦଉଡିରେ ବାନ୍ଧି ଦେଉଥାଏ । ଭ୍ୟାନରୁ ଅର୍ଜୁନ ମଧ୍ୟ କୋର୍ଟ ଆଡ଼କୁ ଚାହିଁଲା । କୋର୍ଟର ଛାତ ଉପରେ ତ୍ରିରଙ୍ଗା ପତାକାଟା ନାରାୟଣପାଟଣା ଆଡ଼କୁ ମୁହଁ କରି ଫଡ଼ ଫଡ଼ କରି ଉଡୁଛି । ସେହି ପତାକା ଭିତରେ ଅର୍ଜୁନ ତା' ବାପାର ମୁହଁକୁ ଦେଖିଲା । ସ୍କୁଲ ପିଲାମାନେ ସ୍ୱାଧୀନତା ଦିବସ ଦିନ ଏହି ପତାକା ଧରି ଗଲାବେଳେ ବାପା ତା'ର ଖୁସିରେ ଡେଇଁ ଉଠେ । ପିଲାଙ୍କ ପରି ପାଟିକରି "ଆମେ ସ୍ୱାଧୀନ, ଆମେ ସ୍ୱାଧୀନ" ବୋଲି କହେ । ଆଉ କହେ - "ଏଥର ରାଜାଘର ଗୋତି ଖଟିବା ବନ୍ଦ" ।

ଜୟପୁର ରଜାଘର ଇଂରେଜକୁ ଡରି ନାରାୟଣପାଟଣାକୁ କିଛି ବର୍ଷ ନିଜର ରାଜଧାନୀ କରିଥିଲା । ମାଟିର ମୋଟା କାନ୍ଥ ଥିବା ରଜା ଉଆସ । ରଜା ଉଆସକୁ ଲାଗି ଏକର ଏକର

ଚାଷ ଜମି । ପୋଡ଼ାପଦର, ବାଲିଆପୁଟ, ବାସନାପୁଟ, ଗତିଗୁଡ଼ାର ଯେତେ ଭେଣ୍ଡିଆ ସବୁ ରଜା ଘର କାମ ପାଇଁ ଗୋଟି ଯିବେ । ନିଜ ଘର କାମ ପଛେ ବାକି ଥାଉ ରଜା ଘର କାମ ଆଗ । ଧାନକଟା, ଧାନ ମାଣ୍ଡିଆ ପୁଣି କାଉଡ଼ି କାଉଡ଼ି କରି ସେ ସବୁକୁ ବୋହି ଖନ୍ଦା ଘର ଭିତରେ ପକେଇଲେ ଯାଇ କାମ ଶେଷ । ସେଇଠୁ ଜୟପୁର ଶାସନକୁ ରଜା ଘର ଧାନ ଯାଏ । ପୁଣି ଇଂରେଜକୁ ଖଜଣା ଦିଆଯାଏ ।

ବାପା ତା'ର ପିଲା ବୟସରେ ଏମିତି କେତେଥର ରଜାଘର ଗୋଟି ଖଟିଛି । କାମ କରିବ ନାହିଁ କହିଲେ ମାଡ଼ ଦିଆଯାଏ । ସେମିତି ସେମିତି ବର୍ଷେ କାମ ନକରି ନୀଳାବାଡ଼ି ଯାତ୍ରା ଦେଖିବା ପାଇଁ ବାପା ତା'ର ଲୁଚିକରି ଚାଲିଯାଇଥିଲା । ସେଥିପାଇଁ ରଜାଘର ପୁଲିସ ଆସି ବାନ୍ଧି ନେଇଯାଇଥିଲା । କେତେ ମାସ ଥାନାରେ ବାନ୍ଧି ରଖିଲା । ପରେ ଯାଇ ଛାଡିଲା । ପ୍ରଥମେ ଯେତେବେଳେ ସ୍ୱାଧୀନ ହେବା କଥା ବାପା ତା'ର ଲକ୍ଷ୍ମୀପୁରଆଡୁ ଶୁଣିଲା ସେ ବର୍ଷ ଘରର ଘୁସୁରୀମାରି ଗାଁ ଭାଇମାନଙ୍କୁ ଭୋଜି ଦେଇଥିଲା । ସମସ୍ତେ କୁଆଡ଼େ ଧୁମ୍ ମଦ ପିଇଥିଲେ । ସେହି ଦିନୁ ତ୍ରିରଙ୍ଗା ପତାକା ଦେଖିଲେ ବାପା ତା'ର ଖୁସିରେ କୁଦିଉଠେ ।

କୋର୍ଟ ଭିତରୁ ଡାକରା ଆସିଲା । ଏଥର ସେମାନଙ୍କ ପାଳି ପଡ଼ିଲା । ବିଚାରାଧୀନ କଏଦୀଙ୍କୁ ହାଜର କରିବା ପାଇଁ ପୁଲିସ ସେମାନଙ୍କ ଅଣ୍ଟାର ଦୌଡ଼ିକୁ ଟାଣିଲା । ସମସ୍ତେ ପୁଣି କୋର୍ଟରୁମ୍ ଭିତରକୁ ଗଲେ । ଧାଡ଼ି ଆଗରେ ଯାଜିର ନାଚିକା, ତାପରେ ଆଉ କିଛି । ସମସ୍ତଙ୍କୁ ଜାଗା ହେଲା ନାହିଁ । ବେଶ କିଛି ବାହାରେ ରହିଗଲେ । ଜଜ୍ ସାହେବଙ୍କୁ କୋର୍ଟବାବୁ ସମସ୍ତଙ୍କ ନାମ ତାଲିକା ଟାଇପ୍ ହୋଇଥିବା ଫାଇଲ୍‌ଟି ବଢାଇଦେଲେ । ଜଜ୍ ସାହେବ ପୃଷ୍ଠା ପରେ ପୃଷ୍ଠା ଓଲଟାଇଲେ ।

୧. ଶ୍ରୀମତୀ କେଣ୍ଡରୁକା ଶିମୋ, ପିତା :- କେଣ୍ଡରୁକୋ ବରସୁ, ଗ୍ରାମ :- ପୋଡ଼ାପଦର, ଜନ୍ମ :-୧୯୮୭, ଧର୍ମ :-ହିନ୍ଦୁ, ଜାତି :-ଆଦିବାସୀ, ଲିଙ୍ଗ :-ମହିଳା, ଜାତୀୟତା:-ଭାରତୀୟ, ଧାରା :- ୧୨୧/୩୯୫/୫୦୬/୧୪୯ ଅଫ ଆଇପିସି- ଅଭିଯୋଗ :- ରାବଣାକୁ ଧନୁତୀର ବର୍ଚ୍ଛା ଧରି ଆକ୍ରମଣ, ତା'ର ଘର ଭାଙ୍ଗିବା, ତା'କୁ ଜୀବନରେ ମାରିଦେବା ପାଇଁ ଧମକ ଇତ୍ୟାଦି, ଅଭିଯୋଗକାରୀ ଶ୍ରୀ ରାବଣା ରାଓ, ପୋଡ଼ାପଦର । (୨) ଜାଞ୍ଜିର ନାଚିକା, ପିତା:- ଛଚିର ନାଚିକା, ଗ୍ରା:- ପୋଡାପଦର, ହିନ୍ଦୁ, ପୁରୁଷ, ଭାରତୀୟ, ଜନ୍ମ :-୧୯୪୬, ବୟସ ୭୦ ପାଖାପାଖି, ଧାରା ୧୨୧/୧୨୧ବି/୧୪୭/୧୪୯/୩୦୭/୫୦୬ ବି ଅଭିଯୋଗ :-ନାରାୟଣପାଟଣା ଥାନା ଅଧିକାରୀଙ୍କୁ ଟାଙ୍ଗିଆ, ଧନୁତୀର ଧରି ଆକ୍ରମଣ, ଜୀବନରେ ମାରିଦେବା ପାଇଁ ଉଦ୍ୟମ, ପୁଲିସ ନିଜ ସୁରକ୍ଷା ପାଇଁ ଗୁଳି କରିବା ହେତୁ ଡଙ୍ଗର ଆଡକୁ ଦଉଡ଼ି ପଳାଉଥିବା ସମୟରେ ଧରା ପଡ଼ିବା, ଅଭିଯୋଗକାରୀ :- ଏସ.ବି. ସାହୁ, ଥାନାଅଧିକାରୀ ନାରାୟଣପାଟଣା (୩)ସିରିକି ମାସି, ପିତା:-ସମ୍ବାରୁ ସିରିକା, ଗ୍ରାମ:- ପୋଡ଼ାପଦର, ଜନ୍ମ :-୧୯୫୯,ଅଭିଯୋଗ :-ସରକାରୀ ମଦଭାଟି ଉପରେ ଆକ୍ରମଣ,

ମାଲିକ ରାବଣା ରାଓଙ୍କୁ ହତ୍ୟା ଧମକ, ଆସବାବ ପତ୍ର ନଷ୍ଟ, ଡକାୟତି, ଅଭିଯୋଗକାରୀ:- ରାବଣା ରାଓ, ପୋଡ଼ାପଦର । (୪) ପିଡିକା ଆପ୍ପୁ, ପିତା:-ପିଡିକା ଗୁଡେଲା, ଗ୍ରାମ :- ଜାଙ୍ଗଡିବାଲସା, ଜନ୍ମ :-୧୯୪୯, ବୟସ :-୬୦, ଅଭିଯୋଗ:-ବେନିୟମ ଭାବେ ଏକାଠି ହେବା, ମାରଣାସ୍ତ୍ରଧରି ପୁଲିସକୁ ଆକ୍ରମଣ, ସରକାର ବିରୋଧୀ ସ୍ଲୋଗାନ ଓ କୁମ୍ବିଙ୍ଗ ଅପରେସନ ସମୟରେ ଧରା ହେବା, ଅଭିଯୋଗକାରୀ:- ଟି କାମେଶ୍ୱର ରାଓ, ଏସଆଇ ଅଫ୍ ପୁଲିସ, ପାର୍ବତୀପୁରମ । ୫)..... ୬)..... ୭)..... ।

ଜଜ୍ ସାହେବ ନିର୍ବିକାର ଭାବରେ ପୃଷ୍ଠା ଓଲଟାଇ ଓଲଟାଇ କୋର୍ଟ ବାବୁଙ୍କୁ ପଚାରିଲେ,- "ସମସ୍ତେ ଭଲ ଅଛନ୍ତି ତ ? କାହାର କିଛି ଅସୁବିଧା ନାହିଁ ?" କୋର୍ଟ ବାବୁ ସଂକ୍ଷିପ୍ତ ଉତ୍ତର ଦେଲେ - "ନାଇଁ ସାର୍ ।" ଏଥର ଆଣିଲା ବେଳେ କିଛି ଧମକ କି ମାଡ଼ ମରାଯାଇ ନାହିଁ ତ ? "ନାଇଁ ସାର ।" ଏଥର ଜଜ୍ ସାହେବ କଏଦୀମାନଙ୍କୁ ଚାହିଁ କହିଲେ, "ତୁମ ଅଞ୍ଚଳକୁ ଗୋଟେ ବଡ଼ କମ୍ପାନୀ ବକ୍ସାଇଟ ଖଣି ପାଇଁ ଆସିବାର ଅଛି । ସରକାର ଚୁକ୍ତି କରିଛନ୍ତି । ଏଥିରେ ତୁମର ବିକାଶ ହେବ । ଏହାକୁ ବିରୋଧ କରିବ ନାହିଁ । କଲେ ପୁଣି ଜେଲ୍ ଆସିବାକୁ ହେବ ।"

ଜାଙ୍ଗିର ନାଚିକା ତା'ର ବୁଢ଼ା ଗଳାରେ ଥରି ଥରି ପଚାରିଲା - "ଆମେ ଆଜ୍ଞା ଏଠାରୁ ମୁକୁଳିବୁ କେବେ ?"

"ମୁଁ କ'ଣ କରିପାରିବି ? ହାଇକୋର୍ଟର ଅର୍ଡର ଆସିବା ଦରକାର ।" ଫାଇଲ ଉପରେ ଏଥର ଶୀଘ୍ର ଶୀଘ୍ର ଦସ୍ତଖତ କରି କୋର୍ଟ ବାବୁଙ୍କୁ କହିଲେ, - "ଯାଅ, ନେଇ ଯାଅ ଏମାନଙ୍କୁ, ସବୁ ଠିକ୍ ଅଛି ।" କୋର୍ଟ ବାବୁ ନିର୍ଦ୍ଦେଶ ଦେବା ସ୍ୱରରେ ହାବିଲଦାରଙ୍କୁ କହିଲେ, ପୁଲିସ ବାଲା ଗାଁ ଲୋକଙ୍କୁ ଦଳେ ବଳଦଙ୍କୁ ଟାଣି ନେଲା ପରି ଝିକି ଝିକି ନେଇଗଲେ । ସମସ୍ତେ ଆସି ପୁଣି ସେହି ବାରଣ୍ଡାରେ ବସିଲେ, ଖାଇବା ପିଇବା ନାହିଁ ।

ସୁନ୍ଥୀ ବସୁ ବସୁ ବାପାଙ୍କୁ ତା'ର ପଚାରିଲା, "ଆବା, ଶମ୍ଭୁକାକାର କଥା ମାଜିଷ୍ଟ୍ରେଟଙ୍କୁ କହିଲନି ?" "ସେ କ'ଣ ଆମ ମୁହଁକୁ ଚାହିଁ ଆମର କଥା ପଚାରୁଛନ୍ତି ? ସେ'ତ ସେମାନଙ୍କୁ ପଚାରୁଛନ୍ତି !" ଅର୍ଜୁନ ଚିଡ଼ ଚିଡ଼ା ସ୍ୱରରେ ଏତକ କହି ପୁଣି ଦୁଃଖ ପାଇ ନୀରବ ରହିଲା । ଆଖି ତା'ର ଛଳଛଳ ହୋଇଗଲା । ସତେ ଯେମିତି ସେହିଠାରେ ସେ ଯେମିତି ଭୋ ଭୋ କରି କାନ୍ଦିପକାଇବ । ଶମ୍ଭୁ ସାନ ଭାଇ ତା'ର, ସମସ୍ତଙ୍କ ସହିତ ସେ ମଧ ଗିରଫ ହୋଇକା ଜେଲ୍ ଆସିଥିଲା । ଗଲା ସପ୍ତାହେ ଛାଡ଼ି ତା ପୂର୍ବ ସପ୍ତାହକୁ ଜ୍ୱର ହେଲା, ମେଲେରିଆ ଜ୍ୱର ସାଙ୍ଗକୁ ଝାଡ଼ା । ଜେଲବାବୁଙ୍କୁ ଯେତେଥର ଗାଁଲୋକ ମିଶିକରି ଯାଇ କହିଲେ, - "ଏଠାରେ ମିଛ ବଟିକା ମିଳୁଛି, କମ ପାବାର ଏଇଟା, ଏଥିରେ ଭଲ ହେବନି, ଆଜ୍ଞା । କୋରାପୁଟ ଡାକ୍ତରଖାନା ନେଇଯିବା ।" ହେଲେ ଜେଲବାବୁ କହିଲେ, "ଡ୍ୟୁଟି କରିବ କିଏ ? ଥାନାବାଲାଙ୍କ ପାଖରେ ଷ୍ଟାଫ୍ ନାହିଁ । ସେମାନେ ମନା କରୁଛନ୍ତି ।" ଏମିତି ଏମିତି କର

ଡେରିକଲେ । ସିରିଏସ୍ ବେଳକୁ ଡାକ୍ତରଖାନା ନେଲେ ଆଉ କ'ଣ ହେବ ? ଗୋଟିଏ ଦିନ ରହିଲା କି ନାହିଁ ମରିଗଲା । ତା ଆଗରେ ତା'ର ସାନଭାଇଟା ଜେଲ ଭିତରେ ଚାଲିଗଲା । ତା'ର ମଡା ନେବା ପାଇଁକି ଗାଁ ଲୋକେ ଆସି ପାରିଲେ ନାହିଁ । କିଏ ଆସିବ ? ଗାଁରେ ପୁରୁଷ ଲୋକେ କିଏ ବା ଅଛି ? ପୁଲିସବାଲା ପୋଷ୍ଟମର୍ଟମ କରି ତା'କୁ ଏଠି ପୋଡ଼ିଲେ କି ପୋତିଲେ କି କୁକୁର ବିଲୁଆଙ୍କୁ ଦେଲେ କିଏ ଜାଣିବ !

ଏଠି ଆଦିବାସୀର ଜୀବନଙ୍କୁ ମଣିଷ ଜୀବନ ବୋଲି କେହି ଗଣନ୍ତି ନାହିଁ । ଏମାନେ ଭାବନ୍ତି ଏଥିରୁ ଗୋଟିଏ ଚାଲିଗଲେ ଆମ ସଂସାରରେ କିଛି ଫରକ ପଡ଼ିବ ନାହିଁ । ବରଂ ତାଙ୍କ ବ୍ୟବସ୍ଥାକୁ ଆଘାତ ଦେବାକୁ କିଛି ଦୁଃସାହସ କରୁଥିବା ଆଉ ଏକ କଣ୍ଟା ତ ଚାଲିଗଲା । ବଞ୍ଚିଥିଲେ ହୁଏତ ସେମାନଙ୍କ ସ୍ୱାର୍ଥରେ ବାଧା ଆଣିଥାନ୍ତା । ସୁନ୍ଦୁରୀର ସେହି ପ୍ରଶ୍ନ ସମସ୍ତଙ୍କ ଆଖିରେ ପୁଣି ଲୁହଆଣିଦେଲା ଓ ତା' ସାଙ୍ଗକୁ ମେଞ୍ଚାଏ କ୍ରୋଧ ।

କୋର୍ଟ କାମ ସରିବା ଉପରେ । ସମସ୍ତଙ୍କର କାଗଜପତ୍ର ଧରି ହାବିଲଦାର ଜଣକ ଘୋଷଣା କଲେ,- "ଏଥର ଯିବା ।" ଏଥର କୋରାପୁଟ ଫେରିଯିବାର ପର୍ବ । ସୂର୍ଯ୍ୟ ମଧ୍ୟ ପଶ୍ଚିମ ଦିଗ ଧରିଲେଣି । ଲକ୍ଷ୍ମୀପୁରର ପୂର୍ବ ଦିଗରେ ନାରାୟଣପାଟଣା, ଲକ୍ଷ୍ମୀପୁର ଠାରୁ ରାସ୍ତାରେ ଗଲେ ୨୨ କିଲୋମିଟର । ଘାଟି ସରିଲେ ଝଞ୍ଜାବତୀ ନଦୀ, ତା'ପରେ ନାରାୟଣପାଟଣା । ଅର୍ଜୁନ ଓ ଅନ୍ୟମାନେ କେତେଥର ଲକ୍ଷ୍ମୀପୁର ଆସିଛନ୍ତି ଚାଲି ଚାଲି । ଘାଟି ରାସ୍ତାରେ ସିଧା ଉଠିଲେ ଚାରିକି ପାଞ୍ଚ କିଲୋମିଟର ହେବ । ଫେରିବା ବାଟ ଆଦୌ ଜଣାପଡ଼େ ନାହିଁ । ଲକ୍ଷ୍ମୀପୁରରୁ ପଥରଟେ ଗଡ଼େଇଦେଲେ ନାରାୟଣପାଟଣା ପହଞ୍ଚିଯିବ । ହେଲେ ଆଜି ଦିନଟା ଯେମିତି ଅଲଗା । ଲକ୍ଷ୍ମୀପୁରକୁ ଆସି କେହି କଣ ଗାଁକୁ ନଯାଇ ରହିପାରେ ? ଏକ ଅଦେଖା ଶିକୁଳି ସେମାନଙ୍କୁ ପଛକୁ ପଛକୁ ଟାଣୁଛି ନିଜ ଗାଁ ଆଡ଼କୁ । ହାତର ଲୁହା କଡ଼ିଟାକୁ ଫିଟାଇ ଦେବାକୁ ଇଚ୍ଛା ହେଉଛି । ସେ ପଟୁ ପୁଲିସଟେ ଚିତ୍କାର କଲା- "ଯିଏ ଯେଉଁ ଗାଡ଼ିରେ ଆସିଥିଲ ସେହି ଗାଡ଼ିରେ ଉଠିଯାଅ ।" ତିନୋଟି ଭ୍ୟାନ ପଛୁଆ କରି ଠିଆ ମଧ୍ୟ ହୋଇଗଲାଣି । ସୁରକ୍ଷା କର୍ମୀମାନେ ବନ୍ଧୁକଧରି ପୋଜିସନ ନେଇଗଲେଣି ।

ଅର୍ଜୁନ ପଛମୁହାଁ ହୋଇ ଆଉଥରେ କୋର୍ଟ ଉପରେ ଉଡୁଥିବା ପତାକାଟିକୁ ଚାହିଁଲା । ସେହି ଆଡ଼କୁ ଚାହିଁ ବାପାଙ୍କୁ ତା'ର କଣ କହିବାକୁ ଚେଷ୍ଟା କଲା । ଦେଶର ସ୍ୱାଧୀନତା ପାଇଁ ଲଢ଼େଇ ସମୟରେ ଆଦିବାସୀ ଲୋକ ଲକ୍ଷ୍ମୀପୁରଥାନା ଆକ୍ରମଣ କରି ଭଙ୍ଗାରୁଜା କରିବା କଥା ସେ ଅଞ୍ଚଳର ପୁରୁଣା ଲୋକଙ୍କଠାରୁ ଅର୍ଜୁନ ଶୁଣିଥିଲା । ସେହି ସମୟରେ ଲକ୍ଷ୍ମୀପୁର ଘଟଣା ଖବର ପାଇ ବାପା ତା'ର ଅଞ୍ଚଳର ବାକିଲୋକଙ୍କ ସହିତ ମିଶି ସେମାନେ ମଧ୍ୟ ଲକ୍ଷ୍ମୀପୁର - ନାରାୟଣପାଟଣା ରାସ୍ତାରେ ଗଛକାଟି ପକେଇ ଦେଇଥିଲେ ଯେମିତିକି ଜୟପୁର ରାଜାଘରଲୋକ କି ଇଂରେଜ ଗାଡ଼ି ନାରାୟଣପାଟଣା ଆସି ନପାରେ । ତାଙ୍କ ଦେଶିଆ

ଲୋକକୁ ଗୋରାଲୋକ ଫାଶୀ ଚଢ଼ାଇବାଟା ବାପା ତା'ର ସହଜରେ ନେଇପାରିନଥିଲା । ସେ ମାଥିଲି ଆଡ଼ର ହେଉକି ଲକ୍ଷ୍ମୀପୁରର, ସେ ଲକ୍ଷ୍ମଣ ନାୟକ ହେଉକି ଆରସି କେଣ୍ଡରୁକା, ସମସ୍ତେ 'ଆମ ନିଜ ଲୋକ', ଏକଥା ବାପା ତା'ର ବାରମ୍ବାର କହୁଥିଲା ।

ସେସବୁ ଲଢ଼େଇ କଣ ପାଇଁ ଥିଲା, ଆଜି ଅର୍ଜୁନ ସେହିକଥା ନିଜକୁ ପଚାରୁଥିଲା ? ସେଇଟା କ'ଣ ରଜା ଘର ବଦଳରେ ଆମ ସରକାର ବିନା ଦୋଷରେ ଆମ ଆଦିବାସୀଙ୍କୁ ବାନ୍ଧି ରଖିବା ପାଇଁ ଥିଲା ? ଏତେ ବର୍ଷ ଭୋଟ ଦେଇ ତେବେ ମିଳିଲା କ'ଣ ? ଯଦି ସତରେ ବାପା ଦେଖିଥିବା ସ୍ୱପ୍ନ ଆଜି ସାକାର ହୋଇଥାନ୍ତା ତେବେ ସାହୁକାର, ଥାନା ଆଇଆଇସି, କଲେକ୍ଟର ଏମାନେ ଜେଲ୍‌ରେ ଥାଆନ୍ତେ । ...ଭଲ ହୋଇଛି ବାପା ତା' ଆଗରୁ ମରିଯାଇଛି । ହୁଏତ ସେ ବୁଝି ପାରି ନଥାନ୍ତା- ସେ ନିଜେ ରଜା ଘରେ ଗୋତି ଖଟିବା ଭଲ ଥିଲା କି ପୁଅ ତାର ସରକାରୀ ଜେଲ୍‌ରେ କଏଦୀ ରହିବା ! ଅଣ୍ଟାରେ ବନ୍ଧାଥିବା ଦଉଡ଼ିକୁ ଜୋରରେ ଖୋଲିଦେଇ ଗାଡି ଉପରକୁ ଉଠିଗଲା ଅର୍ଜୁନ ।

କ୍ଷଣିକ ପାଇଁ ଅର୍ଜୁନ ଭାବି ବସିଲା,- 'ଯଦି ବାପା ସମୟରେ ଲୋକେ ଲକ୍ଷ୍ମୀପୁର ଥାନାକୁ ଆକ୍ରମଣ କରି କଏଦୀଙ୍କୁ ମୁକ୍ତ କରିଥିବେ ତେବେ ଆଜି ସେମାନେ କାହିଁକି ସେମିତି କରି ନପାରିବେ ? ସେମାନେ ତ ଏବେ ଶହେ ସରିକି ଅଛନ୍ତି । କୋରାପୁଟକୁ ପୁଣି ଫେରିବାକୁ କିଏବା ଚାହିଁବ ।' ଅର୍ଜୁନ ଭ୍ୟାନ ଉପରେ ଥାଇ ପଛକୁ ମୁହଁ କରି ଚାହିଁଲା, ଏକାଥରେ ଏତେ ଗୁଡାଏ ବନ୍ଧୁକ ! ସିଆର୍‌ପିଏଫ୍, ବିଏସ୍‌ଏଫ୍ ସାଙ୍ଗକୁ ଥାନା ପୁଲିସ ସମସ୍ତେ ବ୍ୟଗ୍ର, ସମସ୍ତେ ଚାହୁଁଛନ୍ତି କୋରାପୁଟ ଜେଲରେ କଏଦୀଙ୍କୁ ପହଞ୍ଚାଇଦେଲେ ସମସ୍ତେ ଆଶ୍ୱସ୍ତ । ବାପା ସମୟରେ ଲୋକେ କ'ଣ ବେଶୀ ସାହସୀ ଥିଲେ ? ନା ଇଂରେଜ ପାଖରେ ଏବେ ଠାରୁ କମ ବନ୍ଧୁକ ଥିଲା ? ଭୋଟ ଦେଇ ଶାସନ ବାଛୁଥିବା ରାଇଜରେ ଏତେ ବନ୍ଧୁକ କାହିଁକି ? ଅର୍ଜୁନ ନିଜ ଭିତରେ ଏହାର ଉତ୍ତର ନପାଇ ନିଜର ଜୀବନକୁ ଧିକ୍କାର କଲା । ଅନ୍ୟ ମନସ୍କ ହୋଇ ଝିଅ ପାଖରେ ଜୋରରେ ବସିଯିବା ବେଳକୁ ଭ୍ୟାନର ପଟାଟା ନିଜ ମୁଣ୍ଡରେ ଢୋ କରି ବାଜିଲା । ବହୁତ ଜୋରରେ ମୁଣ୍ଡକୁ ଚାପି ଧରି ବସି ପଡିଲା । ଆଖିକୋଣରେ ଲୁହଟିକେ ଆସିଗଲା । ସେହି ଯନ୍ତ୍ରଣା ଭ୍ୟାନପଟା ବାଜିବା ଜନିତ କଷ୍ଟର କି ସରକାରୀ ଷଡ଼ଯନ୍ତ୍ରର ସେକଥା ବୁଝିବା କଷ୍ଟ ଥିଲା ।

ଗାଡ଼ି ଗୁଡ଼ିକ ଲକ୍ଷ୍ମୀପୁର ଛାଡ଼ିଲା । ଏଥର ଘାଟି ଓହ୍ଲାଇବାଟା ଅଧିକ । ସୂର୍ଯ୍ୟ ଟିକେ ଟିକେ ମଉଳିବା ଆରମ୍ଭ କଲେଣି । ଫେରନ୍ତା ବଳଦ ଜୋରରେ ଦୌଡ଼ିବା ପରି ଗାଡ଼ି ଗୁଡ଼ିକ ଜୋରରେ ଚାଲିଛନ୍ତି । ଅର୍ଜୁନର ଆଣ୍ଠୁ ଉପରେ ମୁଣ୍ଡରଖି ସୁନ୍ଦୁରୀ କହିଲା- "ମୋରି ପାଇଁ ଏତେ କଥା ହୋଇଗଲାନା ଆବା ?" ଏହି କଥା କହି ସୁନ୍ଦୁରୀ ଜୋରରେ କାନ୍ଦି ପକାଇଲା । ଏହି କଥା ବାପା ତାର ଜେଲ୍ ଯିବା ଦିନଠାରୁ ତା' ମନରେ ଥିଲା । 'ବାପା ଯଦି ତା'ର ପାଠ ପଢ଼ା ବହି, ଡ୍ରେସ୍ ପାଇଁ ସାହୁକାର ପାଖକୁ ନିଜର ମଜୁରୀ ଟଙ୍କା ମାଗିବାକୁ ଯାଇନଥାନ୍ତା

ତେବେ ଗାଁକୁ ପୁଲିସ କାହିଁକି ଆସିଥାନ୍ତା ? ଏତେ ଅତ୍ୟାଚାର ସେମାନେ କାହିଁକି ପାଇଥାନ୍ତେ ? ସୁନ୍ଦ୍ରୀ ତା'ର ପିଲା ମନରେ ସେତକ ଭାବିସାରିଥିଲା । ଅର୍ଜୁନ କହିଲା- "ତୋ'ର କି ଦୋଷ ?" ରାମେୟା କାକା ପାଖରେ ବସିଥିଲା । ସେ କହିଲା, "ଆମେ କେତେ ଦିନ ଏମିତି କୁକୁର ଭଳି ସାହୁକାର ଦୁଆରେ ପଡ଼ିଥାନ୍ତେ ? ହକ ନିଜ କାମ କଲା ଟଙ୍କା ତ ମାଗିଥିଲୁ । ସେ ଆମକୁ ଦେବ ନାହିଁ ଓଲଟି ପୁଲିସ ଡାକିବ ବୋଲି କିଏ ଜାଣିଥିଲା ? ମଜୁରୀ ତ ମିଳିଲା ନାହିଁ, ହେଲେ ଆମ ଜମି ଟିକକ ଫେରାଇଦେ କହିଲୁ, ସେତକ ବି ଦେଲା ନାହିଁ ।" ରାମେୟା ଏକାଥରେ ଏତେ କଥା ରାଗରେ କହିଦେଇଗଲା ।

ରାମେୟା ଆତା (ପିଉସୀ) ସାହୁକାର ଘରେ ପାଣି ଦେଉଥିଲା । ସେ ବାହା ହୋଇ ନଥିଲା । ରାବଣା ତାକୁ ଦ୍ୱିତୀୟ କରି ରଖିଦେଲା । ପିଲାଛୁଆ ହେଲେ ନାହିଁ । ରାମେୟାର ଜେଜେ ତା' ଆତାକୁ ପଞ୍ଚାୟତ ଅଫିସ ପାଖ ଜମିଟା ଦେଇଥିଲା । ରାବଣା ଚାଲାକିରେ ଶ୍ୱଶୁରଠାରୁ ଜମି ପଟ୍ଟା ନେଇ ନିଜେ ରଖିଲା 'ତା'ର ସ୍ଲାବ ଘରେ ରହିଲେ ଭଲ ନହେଲେ ମୂଷା କାଟିଦେବ' କହି ବୁଢା ଠାରୁ ସେତେବେଳେ ଜମି ପଟ୍ଟା ନେଇଗଲା । ଜେଜେ ମରିଗଲା ପରେ ତା'ର ଆତାକୁ (ପିଉସୀ) ଛାଡ଼ିଦେଲା । ଆତାକୁ ଛାଡ଼ିଲାତ ଛାଡ଼ିଲା ହେଲେ ଜମି ପଟ୍ଟା ଫେରାଇଦେ କହିଲେ ଦେଲା ନାହିଁ । ଶ୍ୱଶୁର ତା'କୁ ବିକି ଦେଇଛି ବୋଲି ସମସ୍ତଙ୍କୁ କହିଲା । ରାମେୟାର ଆତା ଏବେ ରାମେୟା ପାଖରେ ରହି କାମ ଦାମ କରି ଚଳୁଛି । ଗାଁବାଲା ସେହି ଜମିକୁ ସାହୁକାରଠୁ ମୁକୁଳାଇବା ପାଇଁ ଧାନ କଟା ସମୟରେ ଧାନ କାଟିବାକୁ ଗାଁ ସାରା ଏକାଠି ଯାଇଥିଲେ । ଧାନ କଟା ତ ହେଲା ନାହିଁ ଓଲଟି ଗିରଫ ହୋଇ ଜେଲ୍ ଆସିବା ହେଲା ।

ଜେଲ୍ ଆସିବା ପରେ ଅର୍ଜୁନ ଜାଣି ପାରୁଥିଲା ଯେ ସେମାନେ ଏକ ବିରାଟ ଯନ୍ତାରେ ପଡ଼ିଯାଇଛନ୍ତି । ଦିନ ପରେ ଦିନ ଗଡ଼ିବା ସହିତ ସେମାନେ ନିର୍ଜୀବ, ପ୍ରତିକ୍ରିୟାହୀନ, ଢିଥିଲ ମଣିଷ ଯେମିତି ହୋଇଗଲେଣି । ତାକୁ ଲାଗୁଥିଲା ସୁନ୍ଦ୍ରୀ ଠିକ୍ କହୁଛି, ସେ କାହିଁକି ସୁନ୍ଦ୍ରୀର ପାଠ ପାଇଁ ଏତେ ବ୍ୟସ୍ତ ହେଉଥିଲା । ଆଦିବାସୀ ଘରେ କିଏ ପାଠ ପଢ଼ନ୍ତି ନା ପଢ଼ିପାରିଥାନ୍ତି । ପାଠତ ସେହି ସାହୁକାର ଆଉ ସେ ବାବୁ ଘରର ପିଲାଙ୍କ ପାଇଁ ! ତାହେଲେ ଆଦିବାସୀ ପାଇଁ ସତରେ କ'ଣ ଠିକ୍ ? ଅପାଠୁଆ ରହିବା ? ଅନ୍ୟର ଗୋତି ଖଟିବା ? ସଦାବେଳେ ସରଳ, ନିରୀହ ହୋଇ ରହିବା ? ସମସ୍ତେ ଆସି ସେହି ସରଳ, ନିରୀହ ଆଦିବାସୀ କହି ଦଳି ଚକଟି ଦେଇ ଯାଉଥିବେ, ଆଉ କେବେ କିଛି ପ୍ରତିକାର କରିବାର ନାହିଁ ? ଏଇ ତ ଆଦିବାସୀ । ସେଥିରୁ ମୁକ୍ତି ପାଇଁ ଚେଷ୍ଟା କରିବାର ଅର୍ଥ ପୁଲିସ କେସ୍, ଜେଲ, ଗୁଳି ନହେଲେ...।

କ'ଣ ଦରକାର ଥିଲା ଜଙ୍ଗଲବାଲା ସୁନ୍ଦ୍ରୀର ସ୍କୁଲକୁ ଉଡ଼େଇ ଦେବା ? କମ୍ ସେ କମ୍ ଝିଅ ତାର ଏ ଅତ୍ୟାଚାରରୁ ବଞ୍ଚିଯାଇଥାନ୍ତା । ବାପା ମନ ତାର ବିରକ୍ତ ଧରିଲା । ଦୀର୍ଘ ନିଃଶ୍ୱାସ ନେଇ ସେ ଭାବିଲା, ସରକାର ଉପରେ ଭରସା ରଖି ଝିଅକୁ ପାଠ ପଢ଼ାଇବା ପାଇଁ

ଯେଉଁ ଆଶା ଟିକକ ବାନ୍ଧିଥିଲା, ଏଥିରେ ଅନ୍ଧାରରୁ ମୁକ୍ତି ପାଇବ, ସେଥିକୁ ଯେମିତିକି କଳା ବାଦଲ ଚାପି ଦେଲା ।

ଏଥର ଲକ୍ଷ୍ମୀପୁରକୁ ପଛ କରି ପାଞ୍ଚଟି ଯାକ ଭ୍ୟାନ ଘାଟୀ ଉଠିସାରିଲାଣି । ଘାଟୀ ଉଠୁଥିଲା ବେଳେ ପାଞ୍ଚଟି ଯାକ ଗାଡ଼ିର ଶବ୍ଦ କର୍କଶ ଥିଲା, ସମସ୍ତେ ଆଗକୁ ଚାହିଁଥିଲେ ଓ ଅର୍ଜୁନ ତା'ର ବେଶ୍ କିଛି ବର୍ଷ ପଛକୁ ଚାଲିଗଲା । ଅର୍ଜୁନ ଯେତେବେଳେ ଭେଣ୍ଡିଆ, ଗାଁର ସାହୁକାର ରାବଣା ରାଓ ଗାଁକୁ ପ୍ରଥମ କରି ଆସିଥାଏ । ବାପା ତା'ର ଗାଁର ମୁଖିଆ, ତେଣୁ ରାବଣା ଆସି ବାପାଙ୍କୁ ତା'ର କେତେ ଅନୁରୋଧ କଲା । ସାଙ୍ଗରେ ନାରାୟଣପାଟଣା ବଜାରର ଆଉ ଗୋଟିଏ ଶୁଣ୍ଢୀ । ସେ ପୋଡ଼ାପଦର ଛକ ଉପରେ ଘର କରିବ । ସାଙ୍ଗରେ ସ୍ତ୍ରୀ, ଝିଅ ଓ ପୁଅକୁ ମିଶାଇ ଚାରି ପ୍ରାଣୀ । ତେଲୁଗୁମିଶା ଓଡ଼ିଆରେ ସେ କହୁଥାଏ । ଘର ତା'ର ଶ୍ରୀକାକୁଲମ ପଟେ । ଆନ୍ଧ୍ର ପଟେ ମରୁଡ଼ି ପଡ଼ିଛି । ପିଲା ଛୁଆ ମରିଯିବେ । ବାପା ତା'ର ହଁ କଲା । କାଠ ବାଉଁଶ ଯୋଗାଇଦେଲା । ଗାଁରେ କାହାର ଦରକାର ବେଳେ ପଇସେ କି ଦିପଇସା ଶୁଣ୍ଢୀ ସାହାଯ୍ୟ କରିବା ଆଶାରେ ବାପା ତା'ର ହଁ କରିଥିଲା । ସେ ପୋଡ଼ାପଦାରରେ ରହି ପାଖ ଆଖ ଗାଁକୁ ଚାଲିଚାଲି ଶୁଖୁଆ, ସାବୁନ, ତେଲ, ଲୁଣ, ପାନିଆ, ଗାମୁଛା, ଲୁଗା ବିକେ । ଲୋକଙ୍କଠାରୁ ତା' ବଦଳରେ ମହୁଲି, କାନ୍ଦୁଲ, ମକା, ଧାନ ନିଏ । ମାଇକିନା ଅଣ୍ଡିରା ଦୁଇ ଲୋକ ବୋହି ବୋହି ନାରାୟଣପାଟଣା ନେଇ ସେଠାରେ ବଡ଼ ସାହୁକାରଙ୍କୁ ଦିଅନ୍ତି । ଏଇ ଅର୍ଜୁନ ମଧ୍ୟ କେତେ ଥର କାଉଡ଼ି କରି (ଭାର କରି) ପୋଡ଼ାପଦରରୁ ନାରାୟଣପାଟଣା ସେ ସବୁ ପହଞ୍ଚାଇଦେଇଛି । ପଛକୁ ପଛ ରାବଣା ସାଇକେଲ କିଣି ସେଥିରେ ବ୍ୟବସାୟ କଲା ।

ଅର୍ଜୁନକୁ ନିଜର ସାଇକେଲ ଶିଖିବା କଥା ମନେ ପଡ଼ିଲା । ଏତେ ସରୁ ଚକଟାରେ ଏତେ ମୋଟା ଲୋକଟା କେମିତି ଗଡ଼ିଯାଉଛି ? ସେ ଥରେ ସାହାସ କରି କନ୍ଧ ସାହି ଉପରମୁଣ୍ଡରେ ସାଇକେଲରେ ବସି ପେଡେଲ ମାରିଦେଲା, ପଛରୁ ରାବଣା ଧରିଥାଏ । ହେଲେ ହଠାତ୍ ଛେଳିଟିଏ ସାମ୍ନାକୁ ଦଉଡ଼ି ଆସିଲା । ସେ ହାଣ୍ଡାଲକୁ ସଳଖରେ ଧରିପାରିଲା ନାହିଁ । ତା'ର ନିଜର ଦୁଆର ସାମ୍ନାରେ ଅର୍ଜୁନର ସ୍ତ୍ରୀ ବାସନ ମାଜୁଥିଲା । ତା'ରି ଉପରେ ସାଇକେଲ ସହିତ ପଡ଼ିଲା ବେଳକୁ ସ୍ତ୍ରୀ ତା'ର "ଆନାୟୋ" କହି ଜୋରରେ ଛାଟି ଦେଲା ଯେ ସେ ଦାଣ୍ଡ ମଝିରେ ଦିନ ବେଳା ପୂରା ଲଙ୍ଗଳା ହୋଇ ଚିତ୍ କରି ପଡ଼ିଗଲା । ସ୍ତ୍ରୀ ତା'ର ଲାଜରେ ଦଉଡ଼ି କରି ଘର ଭିତରକୁ ପଳାଇଗଲା । ଏକଥା ମନେ ପଡ଼ିଯିବାରୁ ଅର୍ଜୁନ ଟିକିଏ ହସି ଦେଲା ।

ପୋଡ଼ାପଦର କହିଲେ ବେଶ୍ ବଡ଼ ଗାଁଟିଏ । ନାରାୟଣପାଟଣା ତହସିଲ ଅଫିସ ସାମ୍ନା ରାସ୍ତାରେ ପ୍ରାୟ ତିନି କିଲୋମିଟର ଗଲେ ପଡ଼ିବ ଗାଁ । ଗାଁର ଆରମ୍ଭରେ ପଞ୍ଚାୟତ ଘର । ତାକୁ ଲାଗି ସାହୁକାର ଘର । ଏବେ ରାବଣା ସାଙ୍ଗକୁ ଆଉ ଦୁଇ ଜଣ ଶୁଣ୍ଢୀ ଆସି ରହିଲେଣି ।

ପଞ୍ଚାୟତ ପାରିହେଲେ ଡମ ସାହି । ତାକୁ ଡେଇଁଲେ କନ୍ଧ ସାହି । ପଞ୍ଚାୟତ ପଛକୁ ଅଛି ପ୍ରାଇମେରୀ ସ୍କୁଲ । ସେହି ସ୍କୁଲରେ ସୁନ୍ଦ୍ରୀ ପଞ୍ଚମ ଶ୍ରେଣୀ ପଢ଼ିଲା ପରେ ଅର୍ଜୁନ ଝିଅକୁ ନେଇ ନାରାୟଣପାଟଣା ଆବାସିକ ବାଳିକା ସ୍କୁଲରେ ଗଲା ବର୍ଷ ନାମ ଲେଖାଇଦେଇଥିଲା । ଏ ବର୍ଷ ପାଶ୍ କରି ସପ୍ତମ ହେଲାରୁ ଗାଁକୁ ଆସିଥିଲା । ସେହି ବର୍ଷ ଝିଅ ବଡ଼ ହେଲା ବୋଲି ମା' ତା'ର କହିଲା, ଗାଁ ବୁଢୀକୁ ଡାକି ପିନ୍ଧାଲୁଗାକୁ ନଦୀରେ ଭସେଇଦେଲା । ବାପା ତା'ର ଦିଶାରୀ ପାଖରେ ଯାଇ କଥା ହେଲା । ଭଲ ସମୟରେ ହେଲା ବୋଲି ଦିଶାରୀ କହିଥିଲା । ପରେ ବାପା ମା' ଆଶ୍ୱସ୍ତ ହେଲେ । ଝିଅ ପାଇଁ ନୂଆ କପଡ଼ା କିଣି ଆଣି ମା' ତା'ର କପଡ଼ା ପିନ୍ଧାଇବା ଶିଖାଇଦେଲା । ବାପାର ମନରେ ଏଥର ଝିଅ ପାଇଁ ଚିନ୍ତା ଧରିଲା ।

ବଡ଼ ଝିଅଟାକୁ ସେହି ସ୍କୁଲ ପିନ୍ଧା ଛିଡ଼ା ସାର୍ଟରେ କେମିତି ସେ ସ୍କୁଲକୁ ପଠାଇଦେବ ? ସରକାରୀ କଣ୍ଟ୍ରାକ୍ଟ କାମ ସାହୁକାର ଧରିଛି । ଗାଁ ଲୋକ ମିଶି ମାଟିକାମ କରିଥିଲେ । ରାବଣା ତା'ର ମଜୁରୀ ଆଜି ଦେବ କାଲି ଦେବ କହି ଦେଇନାହିଁ । ଅର୍ଜୁନ ନିଜେ ମାଗିବା ପାଇଁ ରାବଣା ଘରକୁ ଯାଇଥିଲା । ଗାଁର ଆଉ ତିନି ଚାରି ଜଣ ମଧ୍ୟ ଯାଇଥିଲେ । ରାବଣା ନିଜେ ଦେହ ଖରାପ କହି ସାମ୍ନାକୁ ଆସିଲା ନାହିଁ । ଗାଁ ଲୋକେ ଆର ଦିନ ସନ୍ଧ୍ୟାରେ ପୁଣି ତା' ଦୁଆରେ ଆସି ହାଜର ହେବା ଆଗରୁ ନାରାୟଣପାଟଣା ଥାନା ଆଇଆଇସି ବାବୁ ଆସି ହାଜର ।

ନାଲିବତୀ ଗାଡ଼ି ଦେଖି ତଥାପି ଅର୍ଜୁନ ଓ ଆଉ ଗାଁ ଲୋକେ ରାବଣାର ଦୁଆରକୁ ଗଲେ । ଥାନା ବାବୁଙ୍କୁ ରାବଣା ଆଗତୁରା କାମ କଲା ଖାତା ଦେଖାଇ ଦେଇଥିଲା । ଅର୍ଜୁନ ଓ ଅନ୍ୟ ସବୁ ଗ୍ରାମବାସୀ ମଜୁରୀ ପାଇସାରି ଥିବା କଥା ସେଥିରେ ଲେଖା ଅଛି । ଟିପ ଚିହ୍ନ ମଧ୍ୟ ଦେଇଛନ୍ତି ।

ଗାଁ ଲୋକଙ୍କ କଥା ହେଲା କାମ ସରିଲା ବେଳକୁ ଚାଉଳ ୨୫ କିଲୋ ଦେଇ ରାବଣା ସମସ୍ତଙ୍କ ଟିପ ଚିହ୍ନ ନେଇଥିଲା । ସେଠାରେ କିନ୍ତୁ ଟଙ୍କା କଥା ଲେଖା ନଥିଲା । ହେଲେ ପରେ ରାବଣା ସେହି ଖାତାରେ ଅଲଗା ଗାର ଟାଣି କାହା ନାମରେ ପାଞ୍ଚ ଶହ କାହା ନାମରେ ଛଅ ଶହ କରି ଲେଖିଦେଇଛି । ଗାଁ ଲୋକଙ୍କୁ ବିଶ୍ୱାସ ହେଲା ନାହିଁ । ଖାତାରେ ନିଜ ଟିପ ଚିହ୍ନ ଦେଖି ମୁଣ୍ଡ ଘାବରାଇଗଲା । କାହା କାହା ଆଖିରେ ଲୁହ ଆସିଗଲା । ଏତେ ବଡ଼ ମିଛ ଏ ସାହୁକାର ଲେଖିପାରେ !

ଥାନାବାଲା ପାଖରେ ତ ଗାଁବାଲାଙ୍କ କଥା ମିଛ ହୋଇଗଲା । ଥାନାବାବୁ ତାଗିଦ କରିଦେଇଗଲା- "ଆଉ ମିଛରେ ହଇରାଣ କଲେ ଜଣ ଜଣ କରି ବାନ୍ଧିନେବି । ଘରେ ଚୁଲି ବି ଜଳିବ ନାହିଁ । ପିଲା ମାଇପେ ଭୋକରେ ମରିବେ ।" ଥାନାବାବୁ ଦେଖିଲା ନାଇଁ ଗାଁ ଲୋକେ କ'ଣ ସତରେ ମିଛ କହୁଥିବେ ? ହେଲେ ସେ'ତ ରାବଣାଠାରୁ ତା'ର ବଟି ଆଗରୁ ପାଇସାରିଥିଲା ।

ହେଲେ ଏ କଥା ଗାଁବାଲାଙ୍କୁ ହଜମ ହେଲା ନାହିଁ । ଏ ଭିତରେ କିଛି ଦିନ ଚାଲିଗଲା । ସୁନ୍ଥୀର ମଧ୍ୟ ସ୍କୁଲ ଖୋଲିଗଲା, ସେ ଯାଇ ସପ୍ତମ ଶ୍ରେଣୀରେ ବସିଲା । ପୁଣି ବାଲିପରବ ଆସିବା ସମୟ ହେଲା । କୁଟୁମ୍ବ ଲୋକେ ପରବ ପାଇଁ ମିଟିଂ କଲେ । ପୁରୁଣା କଥା ପୁଣି କନ୍ଧ ସାହିରେ ଉଠିଲା । ହକ କାମ କଲା ଟଙ୍କା ପୁଣି କେମିତି ଛାଡ଼ି ଦେଇଥାଆନ୍ତେ ! ଏଥର ରାବଣାର ମହୁଲିମଦ ଦୋକାନ ବନ୍ଦ କରିବା ପାଇଁ ନିଷ୍ପତ୍ତି ହେଲା । ରାବଣା ତାର ସରକାରୀ ଭାଟି ଖୋଲି ଦିନରାତି ସଦାବେଳେ ମଦ ବିକୁଛି ।

ଗାଁବାଲାଏ ନିଷ୍ପତ୍ତି ନେଲେ ତା ପରଠାରୁ ଗାଁରେ କେହି ମଦ ପିଇବେ ନାହିଁ କି ମଦ ବିକିବେ ନାହିଁ । ଦଣ୍ଡାସୀ ହାତରେ ଗାଁରେ ଡେଙ୍ଗୁରା ଦିଆହେଲା । ହେଲେ ରାବଣା ଆଉ ତା'ର ଲୋକେ ଏ କଥା ମାନିଲେ ନାହିଁ । ରାବଣା ସାହସରେ ବେଶ୍ କିଛି ଡମ୍ ଲୋକ (ଦଳିତ ବର୍ଗ) ପଞ୍ଚାୟତ ଦାଣ୍ଡରେ ସରକାରୀ ଭାଟି ମଦ ବିକିଲେ । ସେଠୁ ଝଗଡ଼ା ହୋଇ ମାଡ଼ପିଟ ପର୍ଯ୍ୟନ୍ତ କଥା ଗଲା । ଆଦିବାସୀଲୋକଙ୍କୁ ମାରିବା ପାଇଁ ନାରାୟଣପାଟଣା ବଜାର ଲୋକେ ଏକାଠି ହେଲେ । ଆଦିବାସୀ ଲୋକେ ରାଗରେ ରାବଣାର ଲୋକଙ୍କ ଘର ଭାଙ୍ଗିଦେଲେ । ଗାଁର ଗଣ୍ଡଗୋଳ ଦେଖି ଥାନାବାବୁ ଚାରିଜଣ ପୁଲିସଙ୍କୁ ରାବଣା ଘର ଜଗିବା ପାଇଁ ପଠାଇଦେଲେ ।

ମଜୁରୀ ଦେଲା ନାହିଁ ବୋଲି ପୁଲିସ କେବେ ଆଦିବାସୀ ସହିତ ଠିଆ ହେଲା ନାହିଁ । ଅଥଚ ରାବଣାକୁ ମଦ ବନ୍ଦ ପାଇଁ ଗାଁ ଲୋକେ ବାଧ୍ୟ କରିବା ହେତୁ ଗାଁରେ ପୁଲିସ ଆସି ପହଞ୍ଚିଗଲା । ଗାଁର ଗୋଟେ ପଟେ ରାବଣା, ସରପଞ୍ଚ ସୁରେଶ ସିରିକା ଓ କିଛି ତା' ନିଜ ଲୋକ ହେଲେ ଅନ୍ୟପଟେ କନ୍ଧସାହି ଓ ବାକି ଡମ୍ ଲୋକେ । ଗାଁ ଦୁଇ ଭାଗ ହୋଇଗଲା । ଗାଁଲୋକଙ୍କ ରାଗ ପୁଲିସ ଉପରେ ବଢ଼ିଲା । ଗାଁଲୋକଙ୍କ ରାଗ ଦେଖି ଆନ୍ଧ୍ରସୀମାରେ ଥିବା 'ଜଙ୍ଗଲବାଲା' ଖବର ଦେଲେ । ଉପରମାଣ୍ଡିଙ୍ଗ ରାସ୍ତା ପାଖ ତେନ୍ତୁଳିଗଛ ତଳେ ରାତିରେ ମିଟିଂ ହେଲା । ପୋଡ଼ାପଦର କନ୍ଧସାହିର ଲୋକେ ଯୋଗ ଦେଲେ । ସେଥିରେ ସାହୁକାରଙ୍କୁ ଶାସ୍ତି ଦେବା ପାଇଁ ନିଷ୍ପତ୍ତି ହେଲା । ସେଥର 'ଲାଲ ସଲାମ' କହି ସେ ଦିନର ରାତି ମିଟିଂ ଭାଙ୍ଗିଲା ।

ଆରଦିନ ଗାଁଲୋକ ସାହୁକାର ନେଇଥିବା ରାମେୟାର ଆତାର ଜମିରେ ଲାଲପତାକା ପୋତିଲେ । ଜମିରେ ଖରାଟିଆ ଧାନ, ସାହୁକାରଙ୍କୁ ଧାନ କାଟିବାକୁ ମନା କଲେ । ଗାଁରେ ମିଟିଂ ହେବ ଅଞ୍ଚଳର ସବୁ ଲୋକ ଆସିବେ । ତାପରେ ଜମିରେ କୁଟୁମ୍ବ ମିଶି ଧାନ କାଟିବେ, ପେଣ୍ଡା ବାନ୍ଧିବେ ବୋଲି ଗାଁରେ ନିଷ୍ପତ୍ତି ହେଲା । ଦୁଇ ଦିନ ଯାଇଛି କି ନାହିଁ କେଉଁ ଆଡ଼େଥିଲେ ଭୋରରୁ ରାବଣାପଲ ମାଡ଼ିଆସିଲେ । ପୁଲିସ ସବୁ ଗାଡ଼ିରୁ ଖପଖାପ ଡେଇଁ ପିଟିବାକୁ ଲାଗିଲେ । ଲୋକେ ବୁଝିବା ଆଗରୁ, ସ୍ତ୍ରୀ, ପିଲା ବୁଢ଼ୀ ସମସ୍ତଙ୍କୁ ମାରିଲେ । ତାପରେ ଆରମ୍ଭ ହେଲା ଗିରଫଦାରୀ । କାହାକୁ ନଦୀ ପାଖରୁ କାହାକୁ ରାସ୍ତାରୁ, କିଏ ଝାଡ଼ା ଯାଇଥିଲା, କିଏ ପାଣ

ନେଉଥିଲା, ସମସ୍ତଙ୍କୁ ଗିରଫ କଲା ଏ ରାବଣାବାହିନୀ । ଲୋକେ ଦଉଡ଼ି ଜଙ୍ଗଲକୁ ପଳେଇଲେ । ଅର୍ଜୁନକୁ ଚାରିଟା ପୁଲିସ ଘେରି ଯାଇ ଗାଁ ଦାଣ୍ଡ ଉପରେ ଏମିତି ମାରିଲେ ଯେ ଚେତା ଚାଲିଗଲା । ତାପରେ ତାକୁ ଟେକି କରି ଭ୍ୟାନ ଭିତରକୁ ଫୋପାଡ଼ି ଦେଲେ । ସେଇଠୁ ଏବେ ସମସ୍ତେ କୋରାପୁଟ ଜେଲ୍‌ରେ । ଆହୁରି କେତେ ଶହ ଲୋକଙ୍କ ନାମରେ ଗିରଫ ନୋଟିସ୍ ରହିଛି ।

ଆମେ କ'ଣ ସରକାରଙ୍କୁ ଭୋଟ ଦେଇ ନଥିଲୁ ? ନା ଆମେ ସିସ୍ତୁ ଦେଇ ନଥିଲୁ ? ତଥାପି ଏ ସରକାର ଆମର ହେଲା ନାହିଁ କେମିତି ? ହଁ ଆମେ ରାବଣା ଭଳି ଲାଞ୍ଚ ଦେଇନାହୁଁ । ହେଲେ ଦରମା ପାଉଥିବା ଅଫିସରମାନଙ୍କର ପୁଣି ଏତେ ଲୋଭ କାହିଁକି ? କ'ଣ ପାଇଁ ସରକାରୀ ଲୋକଙ୍କୁ ରାବଣାର ଲାଞ୍ଚ ପୁଣି ଦରକାର ହେଉଛି ? ତାହା ହେଲେ ଏ ସରକାର କ'ଣ ଆଉ ଏକ ସାହୁକାର କେବଳ, ଯିଏ ଅଧିକ ଟଙ୍କା ଦେଲା ନିୟମସବୁ ତା'ର ? ତା'ହେଲେ ଏମାନେ ତ ବେଶୀ ଦେଶ ବିରୋଧୀ । ଅଥଚ ଏମାନେ ଆଦିବାସୀ ନାମରେ ମିଛରେ କେସ୍ କଲେ । ଆଦିବାସୀର ଦାବୀକୁ ଶୁଣିଲେ ନାହିଁ । ଏବେ ଗାଁରେ ହେଲା କଣ ? ପୁଲିସର କେସ୍ ହେତୁ ବେଶ୍ କିଛି ଜେଲ୍‌ରେ ରହିଲେ, ଆଉ କିଛି ଜଙ୍ଗଲରେ । ଯେଉଁମାନେ ସାହୁକାର ସହିତ ଥିଲେ ସେମାନେ ଗାଁଛାଡ଼ି ନାରାୟଣପାଟଣା ତହସିଲ ଅଫିସ ସାମ୍ନା ମନ୍ଦିର ପାଖରେ ତମ୍ବୁ ଟାଣି ରହିଲେ । ଲଢ଼େଇ କରୁ କରୁ ଆଗ ନିଜ ଗାଁଟା ଯେମିତି ଦୁଇଭାଗ ହୋଇଗଲା । ଝିଅକୁ ଅଧିକ ପାଠ ପଢ଼ାଇବ ବୋଲି ଅନ୍ଧାରୁଆ ରାଇଜରେ ସ୍ୱପ୍ନ ଦେଖୁଥିବା ଅର୍ଜୁନ, ନିଜ ଝିଅ ସହିତ ନିଜେ କଏଦୀ ହୋଇଗଲା । ସାହୁକାରକୁ ପ୍ରତିବାଦ ନକଲେ ନିଜେ ଭଲରେ ବଞ୍ଚିହେବ ନାହିଁ । ଆଉ ପ୍ରତିବାଦ କଲେ ତାହା ହେଲା ହିଂସା, ଶାନ୍ତିଶୃଙ୍ଖଳାରେ ସମସ୍ୟା, ସରକାରଙ୍କୁ ବିରୋଧ, ଦେଶ ବିରୁଦ୍ଧରେ ଷଡଯନ୍ତ୍ର... । ଏଥିପାଇଁ ଯେଉଁମାନଙ୍କ ସାହାଯ୍ୟ ନେଲା, ସେମାନେ ବି ନିଜର ସୁରକ୍ଷା ଆଗ ଦେଖିଲେ, ସ୍କୁଲ ଘର ଉଡ଼ାଇଦେଲେ ।

ଏତିକି ବେଳେ ଆଗରେ ଏକ ଢୋ କରି ଆବାଜ୍ ହେଲା । ସମସ୍ତେ ଚମକି ପଡ଼ିଲେ । ପୁଲିସବାଲା ଆଣ୍ଠକରି ନିଜର ବନ୍ଧୁକକୁ ଧରି ପୋଜିସନ୍ ନେଇଗଲେ । ସବା ଆଗ ଭ୍ୟାନ୍‌ର ଚକା ଫାଟି ସୁ ସୁ କରି ପବନ ଚାଲିଗଲା । ପଛକୁ ପଛ ସବୁ ଗାଡ଼ି ଧାଡ଼ି କରି ରହିଗଲା । ପୁଲିସବାଲା କଏଦୀମାନଙ୍କୁ ଓହ୍ଲାଇବାକୁ ଦେଲେ ନାହିଁ । କାଳେ କିଏ ଦଉଡ଼ି କରି ପଳାଇଯିବ କଏଦୀଙ୍କ ଭ୍ୟାନ ଚାରିପଟେ ଘୂରିବୁଲିଲେ ।

ସୁନ୍ଦ୍ରୀ ଭ୍ୟାନର ଜାଲି ଦେଇ ବାହାରକୁ ଚାହିଁଥିଲା । ଗାଈଗଡ଼ିଆ ପିଲେ ଗାଈ, ଛେଳି, ମେଣ୍ଢାଙ୍କୁ ଏକାଠି କରିବାରେ ଲାଗିଛନ୍ତି । ଏଥର ସେମାନେ ବି ଘରକୁ ଫେରିବେ । ଦୁଇ ଜଣ ବନ୍ଧୁକଧାରୀ କାକ୍ରାବାଲା ସେମାନଙ୍କ ଆଡ଼କୁ ଆସିବା ଦେଖି ସେମାନେ ଦଉଡ଼ି ଦୂରକୁ ପଳେଇଲେ । ସୁନ୍ଦ୍ରୀ ମୁହଁ ବୁଲାଇ ଆବାକୁ କହିଲା- "ଆୟା କହୁଥିଲା ଏମିତି କଳା କପଡ଼ା ମୁହଁରେ ଦେଇ ଏଇ ପୁଲିସମାନେ କୁମ୍ବିଂ ପାଇଁ ଗାଁକୁ ଆସିଥିଲେ । ଘରର ସବୁ ଧାନ,

ମାଣ୍ଡିଆ ଯାହାଥିଲା ସବୁ ତଳେ ପକାଇଦେଲେ । ଘରର ହାଣ୍ଡି, ଗିନା, ଯାହା ଥିଲା ସବୁ ଭାଙ୍ଗି ଦେଲେ । ତାପରେ ପାଣି ଆଣି ବିହନ ଉପରେ ଢାଳି ଦେଲେ । ମୁଁ ତ ସେତେବେଳେ ସ୍କୁଲରେ, ଆୟା ସେ ସବୁକୁ ଶୁଖାଶୁଖି କଲା । କିନ୍ତୁ ସେ ସବୁରେ ପୋକ ଲାଗି ନଷ୍ଟ ହୋଇଗଲା ।" ଅର୍ଜୁନର କିନ୍ତୁ ସେ ସବୁକୁ ଆଉ ଶୁଣିବାକୁ ମନ ନାହିଁ । ସେ ଯେମିତି କହିବାକୁ ଚାହୁଁଛି 'ଆଉ ସେମାନଙ୍କ କଥା କହନାହିଁ ।' ହେଲେ ସୁନ୍ଦ୍ରୀର ସେ ଆଡ଼କୁ ନଜର ନାହିଁ । ଏଥର ବାପାର ମୁହଁକୁ ଚାହିଁ କହିଲା- "ଆବା ଏଥର ଚାଷ କିଏ କରିବ ?"

ଅର୍ଜୁନ ଦୁଃଖ ମିଶା ସ୍ୱରରେ କହିଲା- "ଆମକୁ ବର୍ଷା ଆଗରୁ ଜାମିନ ହେଲେ ସିନା ହଳ କରିବା କି ଚାଷ କରିବା କଥା ଭାବିବା ?" ରାମେୟା ରାଗରେ ଜବାବ ଦେଲା- "ଆମକୁ ଆଉ ଜାମିନ ହେବ କି ? ଜାମିନ ଆଦୌ ହେବନି । ଦେଖିବୁ ସେ ଜୟପୁର ଲୋକଟା ମର୍ଡର କେସ୍‌ରେ ଆଜୀବନ ସଜ୍ଜା ଭୋଗୁଛି । ଆମେ ସେମିତି ରହିବା । ରାବଣା ପ୍ରତିମାସରେ ଆସି କଲେକ୍ଟରକୁ ଭେଟିକି ଯାଉଛି । ଏବେ ମଧ୍ୟ ଆସୁଥିବ, ଶାନ୍ତି କମିଟିର ସେ ସଭାପତି । ନାରାୟଣପାଟଣାର ସବୁ ସାହୁକାର, ବେପାରୀ, ଦୋକାନୀ, ନେତାମାନେ ସମସ୍ତେ ଶାନ୍ତି କମିଟିର ମେମ୍ବର । ଏବେ ଥାନାବାବୁ ତାଙ୍କର, ତହସିଲ ତାଙ୍କର, ବିଡିଓ ତାଙ୍କର, କୋର୍ଟ ମିଶା ତାଙ୍କର । ...ଆମକୁ ଆଉ ଜାମିନ ହେବ ନା ଆମେ ମୁକୁଳିବା..." ରାମେୟା ଭୋ ଭୋ କରି କାନ୍ଦି ପକାଇଲା । ଆଖିରୁ ଲୁହ ଯେମିତି ତା'ର କଥା ଶୁଣିବାକୁ ନାରାଜ । ଶୀଲ ଆୟା ନିଜ ମୁହଁକୁ ନିଜ ଲୁଗାକାନିରେ ପୋଛିଦେଲା । ପାଖରେ ବସିଥିବା ସୁନ୍ଦ୍ରୀର ମୁହଁକୁ ପୋଛି ନିଜ ଆଡ଼କୁ ଟାଣିନେଲା । ସେହି ଉଷ୍ମତା ଭିତରେ ସେ ଛାଡ଼ି ଆସିଥିବା ନିଜ ଛୁଆକୁ ଅନୁଭବ କରୁଥିଲା । ପୁଣି ସମସ୍ତେ ସେହି ଅନିଶ୍ଚିତତା ଭିତରକୁ ଚାଲିଗଲେ କେବେ ଜାମିନ ହେବ, କେବେ କେସ୍ ତୁଟିବ, ଆସନ୍ତା ବର୍ଷକୁ ଘର ଲୋକେ ଖାଇବେ କ'ଣ ?

ଏଥର ଭ୍ୟାନ ଗୁଡ଼ିକ ପୁଣି ଗଡ଼ିବା ଆରମ୍ଭ କଲା । ପୁଲିସମାନେ ଧଡ଼ଧଡ଼ କରି ଗାଡ଼ି ଭିତରକୁ ଡେଇଁ କରି ବସିଲେ । ସେମାନଙ୍କୁ ଆଶ୍ୱସ୍ତ ଲାଗିଲା ଯାହାହେଉ କିଛି ହୋଇନାହିଁ । ଭଲରେ ଭଲରେ ଷ୍ଟେପିନ ବଦଳାଇ ଦିଆଗଲା । କାକରିଗୁମ୍ମା ମୋଡ଼ଟା ପାରି ହୋଇଗଲାଣି । ଏହାପରେ ଦଶମନ୍ତପୁର ଛକ ଆଉ ତା'ପରେ କୋରାପୁଟ, ପୁଲିସମାନେ ଖୁସିରେ ବାହାରକୁ ଚାହିଁଛନ୍ତି । କାହା କାହାର ଆଖିପତା ତୁରନ୍ତ ଲାଗିଗଲାଣି ।

କଏଦୀମାନଙ୍କୁ କିନ୍ତୁ ନିଦ ନାହିଁ । ପୁଣି କେତେ ସମୟ ପରେ କୋରାପୁଟ, ତାପରେ ସେହି ବିରାଟ ପ୍ରାଚୀର ଆଉ ଲୁହା ଗେଟ ଭିତରେ ଜୀବନ । ବାହାରର ପବନ ବାଜିବାର ସୁଯୋଗ ନାହିଁ । ଅର୍ଜୁନ ପୁଲିସର ଗାଡ଼ିମାନଙ୍କୁ ଚାହିଁ ଭାବୁଥିଲା । ଏମାନେ ସବୁ କେମିତି ଗୋଟେ ଗୋଟେ ସାହୁକାରର ଏଜେଣ୍ଟ । ଗାଁକୁ ଯିଏ ଆସିଲା ସେ ପଶିଲା ସାହୁକାର ଘରେ, ଗ୍ରାମସେବକ ତା'ଦୁଆରେ, ବିଡିଓ ତା' ଦୁଆରେ, ଥାନାବାବୁ ତା ଦୁଆରେ, ପଞ୍ଚାୟତକ

ଆସୁଥିବା ବିହନ, ସାର, ଔଷଧ ଆସିଲେ ପଞ୍ଚାୟତ ଘରେ ଜାଗା ନାହିଁ କହି ସେ ରହିବ ସାହୁକାର ଘରେ । ବ୍ଲକରୁ ଇଞ୍ଜିନିୟର ଆସିଲେ ସେ ପଶିବ ରାବଣା ଘରେ, ଗ୍ରାମସେବକ ଆସିଲେ ସେ ପଶିବ ତା' ଘରେ । ଗଲା ଏମଏଲଏ ଭୋଟରେ ଶଙ୍ଖ ଲଗା ମନ୍ତ୍ରୀ ଭାଷଣ ଦେବାକୁ ଆସି ସେ ବି ପଶିଲେ ତା'ର ଘରେ । ସାହୁକାର ପୁଅ ଏବେ ତାଙ୍କ ଦଳର ବ୍ଲକ ସଭାପତି । ପୁଲିସ, ଅଫିସର, ସାମ୍ବାଦିକ ସମସ୍ତଙ୍କ ସହିତ ଏବେ ତା'ର ବସାଉଠା ।

ଏତେ କଥା ଭାବୁ ଭାବୁ କେତେବେଳେ କୋରାପୁଟ ବଜାର ଚାଲିଗଲାଣି ଜାଣି ପାରିଲା ନାହିଁ । ଏଥର ଜେଲ୍ ଆସିଗଲା । ଜେଲ୍‌ର ଗେଟ ଭିତରକୁ ଗାଡ଼ି ପଶିଲା । ଭ୍ୟାନ୍ ପଛ ପାଖ ଦୁଆର ଖୋଲି ବାହାରିଲେ ଏଥର ଜେଲର କବାଟ ଯେମିତି ପାଛୋଟି ନେବ । ହେଲେ ଆଜି ଜେଲ୍‌ର ଦୁଆର ପାଖରେ ସାମାନ୍ୟ ଭିଡ଼ । ଜେଲ୍‌ର ଜେଲ୍‌ର ଆଞ୍ଜା ମିଠା ବାଣ୍ଟୁଛନ୍ତି । ଗାଡ଼ିରୁ ବାହାରୁଥିବା ଲୋକ ହାତରେ ସେ ମିଠାଟିଏ ଦେଉଛନ୍ତି । ସବା ପଛ ଗାଡ଼ିରେ ଅର୍ଜୁନ, ସୁନ୍ଦ୍ରୀ, ରାମେୟା ସମସ୍ତେ ବସିଥାନ୍ତି । ଅର୍ଜୁନର ପାଟିରୁ ବାହାରିଗଲା- "କଣ କଟକରୁ ଜାମିନ ଆସିଗଲା ନା କ'ଣ ?" ସମସ୍ତେ ଗେଟ ଆଡ଼କୁ ଚାହିଁଲେ । ଜୀରା କହିଲା, "ଏତେ ରାତିରେ ସତରେ ଯଦି ମୁକୁଳାଇ ଦିଅନ୍ତି ତେବେ ଗାଁକୁ କେମିତି ଯିବା ?" ରାମେୟା ତୁରନ୍ତ କହିଲା, "ରାସ୍ତା କଡ଼ରେ ପଛେ ଶୋଇଯିବା ହେଲେ ଜେଲ୍ ଭିତରେ ଆଉ ରହିବା ନାହିଁ ।"

ଗାଡ଼ିରୁ ସମସ୍ତେ ଜଣ ଜଣ କରି ଓହ୍ଲାଇ ଗଲେ । ଜେଲର୍ ବାବୁ ଜଣ ଜଣ କରି ସମସ୍ତଙ୍କ ହାତକୁ ମିଠା ଦେଉ ଦେଉ କହିଲେ- "ଆଜି ଝିଅର ମାଟ୍ରିକ୍ ପରୀକ୍ଷା ଫଳ ବାହାରିଛି । ଭଲ ନମ୍ବର ରଖି ପାଶ୍ କରିଛି । ଭିତରେ ସମସ୍ତେ ମିଠା ଖାଇଲେଣି । ତୁମକୁ ଅପେକ୍ଷା କରିଥିଲି ।"

ଅର୍ଜୁନ ମିଠାଟିକୁ ଧରି ଗେଟ ପାଖରେ ଟିକେ ଠିଆ ହେଲା । ତା' ଆଖିରେ ଲୁହ ଭରିଗଲା । ସେ ମଧ ତା' ଝିଅକୁ ପଢ଼େଇବ ବୋଲି ସ୍ୱପ୍ନ ଦେଖିଥିଲା । ଆଜି ସେ ତ କଏଦୀ, ତା ଝିଅ ମଧ କଏଦୀ । ଅର୍ଜୁନ ଭୋ ଭୋ କରି କାନ୍ଦି ପକାଇଲା । ଜେଲ୍‌ର ଲୁହାଗେଟ ବାହାରେ ମିଠାଟାକୁ ପକେଇଦେଇ ଜେଲ୍ ଭିତରକୁ ପଶିଗଲା । ଅନ୍ୟମାନେ ସମସ୍ତେ ମଧ । କାନ୍ଦି କାନ୍ଦି କହିଦେଇଗଲା, "ଆମର ଝିଅ କିନ୍ତୁ ପାଠପଢ଼ି ପାରିଲା ନାହିଁ, ବେଶୀ ଚାହିଁଲେ ଜେଲ୍ । ଆମର ଦୋଷ, ଆମେ ଆଦିବାସୀ ।"



# ଗିରଫ ମାଓବାଦୀ

୨୦୦୮ ମସିହା ଜାନୁଆରୀ ମାସର ଶୀତ ସକାଳରେ ଟିକିରି ବଜାରଟା ଗହଳି ଧରିବା ଆଗରୁ ପୁଲିସ ଛାଉଣି ହେଇଯାଇଛି । ବଜାରର ଠିକ ମଝାମଝିକି ଅବସ୍ଥିତ ଥାନାର ବିରାଟ ପାଚେରି ଓ ବାଲିବସ୍ତାକୁ ଡେଇଁଲେ ବିରାଟ କୋଠାଘର । ସେହି ଘର ଭିତରୁ ଧୁମ୍ ଧୁମ୍ ଧଡାସ୍ ଧଡାସ୍‌ର ଶବ୍ଦ ସାଙ୍ଗକୁ ବିକଳ ଚିତ୍କାର ସମଗ୍ର ପରିବେଶକୁ ଆତଙ୍କିତ କରିଦେଇଛି । ଥାନା ଠାରୁ ସାମାନ୍ୟ ଦୂରରେ ଉଚ୍ଚ ସ୍ଥାନରେ ଠିଆ ହୋଇଥିବା ପ୍ରଶ୍ନିଳ ଜନତା ଏକ ଲୟରେ ଥାନା ଆଡ଼କୁ ଚାହିଁଛନ୍ତି । ଥାନା ଭିତରୁ ପୁଣି ଶୁଣାଗଲା,

"ଶଳା, ଗଞ୍ଜେଇ ଚାଷ କରୁଛ ।" ..... "ଶଳେ, ଗାଁରେ ପୁଲିସକୁ ପଶେଇଦେଉନ ।"

ପୁଣି ଧୁମ୍ ଧୁମ୍ ପଟାସ୍ ପଟାସ୍ ଶବ୍ଦ ।

- "ଶଳେ, ମାଓବାଦୀ ସାଜିଛ ଶଳେ, ନାଇଁ ?"

- "ଶଳେ ! କମ୍ପାନୀକୁ ଜାଗା ଛାଡ଼ିବ ନାହିଁ, ଜମି ଦେବ ନାହିଁ ବୋଲି କହୁଛ ।"

ଥାନା ଅଧିକାରୀଙ୍କ ସମସ୍ତ ରାଗ ମିଶିଯାଇଛି ଯେମିତି । ଅଣ୍ଟାରୁ ବେଲ୍ଟ ଖୋଲି ଧଡ଼ାସ୍ ଧଡ଼ାସ୍ କରି ମାରିଚାଲୁଥିଲେ ଥାନା ଭିତରେ । ଦୁଇ ଆଦିବାସୀ ଜଗ ମାଝୀ ଆଉ ତାର ପୁତୁରା ଦିନା ମାଝୀ ଆଜି ଧରାପଡ଼ିଛନ୍ତି ।

ଝାଳନାଳ ହୋଇ ଗର୍ଜି ଚାଲିଛନ୍ତି ଟିକିରି ଥାନା ଅଧିକାରୀ ଶ୍ରୀଯୁକ୍ତ ମୁଣ୍ଡ୍ । ଖାକୀ ପୋଷାକରେ ମାଟିଆ ଧୂଳିର ଏକ ପରସ୍ତ ତିଆରି କରିଦେଇଛି । ଭିଡ଼ାଭିଡ଼ି ଓ ଟଣାଟଣିରେ ସାର୍ଟର ହାତ ପାଖଟା ପୂରା ଚିରିଯାଇଛି । ଗୋରା ମୁହଁଟା ପୂରା ନାଲି ପଡ଼ିଯାଇଛି ।

"ଶଳେ କୋଉ ସାହସରେ ଆସିଥିଲ ଜାଗା ଉପରକୁ ! ଜାଣିନ ସରକାରର ଶକ୍ତି କେତେ ! ଶଳେ, ମାଓବାଦୀଙ୍କ ସହିତ ମିଶିଛ, ନାଇଁ ?" ପୁଣି ହେଲା ମାଡ଼ ଧଡ଼ାସ୍ ।

ପୁଣିଥରେ ବିକଳ ଚିତ୍କାର କଲା ଜଗ ମାଝୀ । ଏଥର ଅଖାଡୁଆ ଜାଗାରେ ବାଜିଗଲା ଥାନାବାବୁଙ୍କ ବୁଟ୍ । ଦିନାର ରାଗ ଉଠିଗଲା । ଇଚ୍ଛା କରୁଥିଲା ଥାନାବାବୁର ବେକଟାକୁ ମୋଡ଼ିଦେବ ଠିକ୍ କୁକୁଡ଼ା ମୁଣ୍ଡ ପରି । ବାବୁଙ୍କ ଟେବୁଲ ଉପରେ ରିଭଲଭର୍‌କୁ ଦେଖି ଶଙ୍କିଗଲା । କାକାକୁ କୁଣ୍ଢାଇ ଧରି ସବୁ ମାଡ଼ତକ ପୁଣି ଥରେ ସେ ନିଜ ଦେହକୁ ନେଇଗଲା ।

"ଶଳେ, ମୁଁ ଆସେ । ମାଓବାଦୀ କେସ୍ ଲଗାଇ ଯଦି ଜେଲ୍ ନପଠାଇଛି ତାହାହେଲେ ମୁଁ ବ୍ରାହ୍ମଣ ଘରର ପିଲା ନୁହେଁ ।" ଅଣ୍ଟାର ବେଲ୍ଟଟାକୁ ଛାଟିଦେଇ ଧୁମ୍ ଧୁମ୍ କରି ଚାଲିଗଲେ ଶ୍ରୀଯୁକ୍ତ ମୁଣ୍ଡ୍ । ବାହାରେ ଖାକିର ସମୁଦ୍ର । ବନ୍ଧୁକରେ ହାତକୁ ବାଡ଼େଇ ଭୂଇଁରେ ଗୋଡ଼କୁ ପିଟି ସଲାମ ଦେଲେ ସେମାନେ । କିନ୍ତୁ ଶ୍ରୀଯୁକ୍ତ ମୁଣ୍ଡ୍ ସେ ଆଡ଼କୁ ନ ଅନାଇ ସିଧା ଚାଲିଲେ ନିଜର ବସାଆଡ଼କୁ ।

ଅଫିସର ଚଟାଣ ତଳେ ଗଡୁଥିଲେ ଜଗା ଆଉ ଦିନା । ବାହାରକୁ ଦେଖିଲେ ଦେଖାଯାଉଛି କେବଳ ବନ୍ଧୁକ ଆଉ ବନ୍ଧୁକ । ସବୁ ଯେମିତି ତାଙ୍କରି ଆଡ଼କୁ ମୁହଁ କରି ରହିଛି । ଦୁଇଜଣ କନେଷ୍ଟବଳ ଟେକି ଟେକି ଜଗା ଆଉ ଦିନାକୁ ବାବୁଙ୍କ ଅଫିସ୍‌କୁ ଲାଗି ରହିଥିବା ହାଜତ ଭିତରକୁ ଫୋପାଡ଼ି ଦେଲେ । ହାଜତର ଗ୍ରୀଲ୍‌ଟାକୁ ଟାଣିଆଣି ବିରାଟ ଏକ ତାଲା ଝୁଲାଇଦେଲେ । ବହୁତ ଦିନ ହେଲା ହାଜତ ଭିତର ଝଡା ହୋଇନଥିବା ହେତୁ ମୂଷା ଲଣ୍ଡିରେ ଭରପୁର ହୋଇ ଦୁର୍ଗନ୍ଧ ବାହାରୁଥାଏ । ସେଥିରେ ଜଗା ଯେତେବେଳେ ଉଠି ବସିବାକୁ ଚେଷ୍ଟା କଲା, ପାରିଲା ନାହିଁ, ପଡ଼ିଗଲା । ଦିନା ନିଜର ଗାମୁଛା ଚିରି ଜଗାର ଖଣ୍ଡିଆ ଜାଗାରେ ପଟି ବାନ୍ଧିଦେଲା ।

ଗାଁର ଗାଣ୍ଡା (ଗ୍ରାମରକ୍ଷୀ) ଆସି ଚୁପ୍ କରି ପାଣି ବୋତଲଟା ଦେଉ ଦେଉ କହିଲା,- "ବାବୁ ଏବେ ବସା ଆଡ଼େ ଯାଉଛନ୍ତି । ଗାଧୋଇ କରି ପୁଣି ଆସିବେ । ହେଲେ ତୁମେ ଗାଁ ବାଲାଏ କ'ଣ ଜାଣିନଥିଲ ? ମୁଁ ତ ଖବର ଦେଇଥିଲି । ପୁଲିସ ପୂରା ଛାଉଣି ହେଲେଣି, କମ୍ପାନୀ ପାଇଁ ଜମି ଦରକାର । ଗାଁବାଲେ ଠେଙ୍ଗା ଧରି କାହିଁକି ଆସିଥିଲ ବିରୋଧ କରିବାକୁ ?"

ଜଗା ତା'ର ଦିନା ମୁହଁକୁ ଚାହିଁ ଧୀରେ କହିଲା,- "ମେଷ୍ଟୁଆ ଗାଣ୍ଡାର ପେଟ ପୂରିଯାଇଛି ।" ଦିନା ସେହି କଷ୍ଟରେ ବି ହସିଦେଲା । ଗାଣ୍ଡା ତା'ର ଶୁଣିପାରି ରାଗ ତମତମ ହୋଇ ପଳାଇଗଲା । ଗଲା ବେଳେ କହିଦେଇ ଗଲା,- "ଗାଁ ଭାଇ ବୋଲି ଅସୁବିଧା ବୁଝିବା ପାଇଁ ଆସିଥିଲି । ସେତକ ମଧ୍ୟ ତୁମକୁ ଲୋଡ଼ା ନାହିଁ ।"

ପାଣି ପିଇ ଜଗା ଆଉ ଦିନା ସାଷ୍ଟମ ହେଲେ । ଜଗା ପାଟି କଲା ଦିନାକୁ,- "ତୁ ତ ଦଉଡ଼ି କରି ପଳାଇଥାନ୍ତୁ । ମୁଁ ପଡ଼ିଗଲି କ'ଣ ହେଲା । ମୁଁ ବୁଢ଼ାଲୋକ । ତୁ ମୋ ପାଇଁ ରହିଗଲୁ କାହିଁକି ?"

- "ନାଇଁ କାକା, ସେମାନଙ୍କ ମାଡ଼ ଦେଖି ମୋର ମନ ଡାକିଲା ନାହିଁ । ଗୋଟେ ଲୋକକୁ ଏତେ ପୁଲିସ ଘେରି ଯାଇଥିଲେ । ତୋତେ କୁଣ୍ଢାଇ ଧରିନଥିଲେ ତୁ ମରିଯାଇଥାନ୍ତୁ । ଗୋରୁ ଭଳିଆ ସେ ପୁଲିସ ଗୁଡ଼ାକ ତୋତେ ମାରି ଚାଲିଥିଲେ ଯେ ।"

ହାଜତର ବାହରଟା ଥାନାବାବୁଙ୍କ ଅଫିସ । ସକାଳର ଖରାରେ ଅଫିସଟା ଉଜ୍ଜ୍ୱଳ ହୋଇ ଦେଖାଯାଉଛି । ବହୁତ ସୁନ୍ଦର ଟେବୁଲ ସାଙ୍ଗକୁ ଗଦିଲଗା ଚେୟାର । ଟେବୁଲ ଉପରଟା ସଜା ହୋଇଛି ସୁନ୍ଦର କପଡ଼ାରେ । ଗଲା ବର୍ଷ ବଳଦ ଚୋରୀ ଯାଇଥିଲା ବୋଲି ଥାନାକୁ

କେସ୍ ଦେବାକୁ ଆସିଲା ବେଳେ କିନ୍ତୁ ବାବୁଙ୍କ ଅଫିସଟା ଏମିତି ସଜ୍ଜା ହୋଇନଥିଲା । ଶୁଣିଥିଲା କମ୍ପାନୀ ଆସିଲା ପରେ ଥାନାର ରଙ୍ଗ ବି କୁଆଡ଼େ ବଦଳିଯାଇଛି ।

ବାବୁଙ୍କର ଅଫିସର କୋଣକୁ ଲାଗି ଲମ୍ବା ହୋଇ ସଜ୍ଜା ହୋଇରହିଛି ଏକ ନଳିଆ ଲମ୍ବା ବନ୍ଧୁକଗୁଡ଼ାକ । ଗୋଟେ ଲାଇନରେ ସେଗୁଡ଼ାକ ଠିଆ ହୋଇଛନ୍ତି ଯେମିତି କେବଳ କାହାର ଆଦେଶକୁ ଅପେକ୍ଷା କରିଛନ୍ତି, ଆଦେଶ ମିଳିଲା ମାତ୍ରେ ଢୋ ଢୋ ହୋଇ ଫୁଟିବେ । ଏହି ବନ୍ଧୁକ ଗୁଡ଼ାକ ଧରି ଦୂରରୁ ମାରି ପାରୁଥିବା ହେତୁ ତ ପୁଲିସକୁ ଜଗା ଆଉ ଦିନା ଆଦିବାସୀର ବେଶୀ ଡର । ଜଗା ତା'ର ପିଲାଦିନେ ଶୁଣିଥିଲା ରଜାଘର ଲୋକ ଏମିତି ରଜାର କଥା ନମାନିଲେ ସେ ଲୋକଙ୍କୁ ମାରିଦେଉଥିଲେ । ହେଲେ ଏ ପରା ନିଜର ସରକାର ?

ଜଗାର ମନେପଡ଼ିଲା, ସେହି ବନ୍ଧୁକ ଗୁଡ଼ାକ ଗଲା ବର୍ଷ ଠିକ ସେହି ଜାଗାରେ ଥିଲା । ବଳଦ ଚୋରୀ କେସ୍ ପାଇଁ ଏତଲାରେ ଟିପ ଚିହ୍ନ ଦେଇ ଫେରିଲା ବେଳକୁ ଜଗା ବାଟରେ ଗାଣ୍ଡାକୁ କହିଥିଲା,- "ସେଥିରୁ ଗୋଟେ ଚୋରାଇ ଆଣୁନୁ । ବଢ଼ିଆ ବାରିହା ଶିକାର ହୁଅନ୍ତା ।" ଗାଣ୍ଡା ସେଥର ହସି ଦେଇଥିଲା । ସେହି ବନ୍ଧୁକଗୁଡ଼ାକ ଯେ ଆଜି ସେମାନଙ୍କୁ ଶିକାର କରିଦେଲା, ଜଗାକୁ ଏକଥା ବୁଝିବାକୁ ଆଉ ବାକି ନଥିଲା । କମ୍ପାନୀକୁ ବିରୋଧ କଲାବେଳକୁ ପୁଲିସ ଆସି ହାଜର ହୋଇଗଲା । ସକାଳୁ ସକାଳୁ ଜମି ମାପଚୁପ ପାଇଁ ଆସିଥିବା କମ୍ପାନୀବାଲାଙ୍କୁ ବିରୋଧ କଲାବେଳକୁ ବନ୍ଧୁକ ଫୁଟିବା ଶୁଣି ଗାଁ ଲୋକେ ସମସ୍ତେ ପାହାଡ଼ ଉପରକୁ ଦଉଡ଼ିବାକୁ ଲାଗିଲେ । ଆଉ ପାହାନ୍ତିଆ ଆଲୁଅରେ ଦେଖିନପାରି ପଥରରେ ଝୁଣ୍ଟି ପଡ଼ିଥିଲା ଜଗା । ପୁଲିସ ହାତରେ ଧରା ପଡ଼ି ମାଡ଼ ଖାଇଥିଲା ସେ ଓ ତା' ସାଙ୍ଗକୁ ପୁତୁରା ଦିନା ମଧ୍ୟ ।

ଦିନା ଥାନାବାବୁଙ୍କ ଅଫିସର କାନ୍ଥ ଆଡ଼କୁ ନଜର ଦେଲା । ଗାନ୍ଧୀଙ୍କ ଫଟୋ କାନ୍ଥରୁ ଝୁଲି ପଡ଼ିଛି । ଫଟୋର ଦେହରେ ପ୍ଲାଷ୍ଟିକର ମାଳଟେ ପଡ଼ିଛି । ତାର ମନେ ପଡ଼ିଲା, ଗୋରଖପୁର ସ୍କୁଲରେ ସେ ପଢ଼ିଲା ବେଳେ ସାର୍ କହୁଥିଲେ- 'ଗାନ୍ଧୀ ପିଲା ବେଳେ ତାଙ୍କୁ କିଏ ଚାପୁଡ଼େ ମାରିଲେ ସେ ଆର ଗାଲ ଦେଖାଇ ଦେଉଥିଲେ । ସେଥିପାଇଁ ତାଙ୍କୁ ଏ ଦେଶ ପୂଜା କରୁଛି ।' ଗାନ୍ଧୀଙ୍କୁ କ'ଣ କେବେ ଏହି ମୁଣ୍ଡ ଭଳି ଥାନା ବାବୁ ମାରିଥିବେ ? ମାରିଥିଲେ ସେ କ'ଣ ପିଠି ବଦଳରେ ଛାତି କେବେ ଦେଖାଇ ଦେଇଥାନ୍ତେ ? ଦିନାକୁ ଲାଗିଲା ଗାନ୍ଧୀ ଯେମିତି ତାକୁ କଣେଇ କଣେଇ ଦେଖୁଛନ୍ତି ।

ଅଫିସ୍‌ର ଭିତର କୋଣକୁ ଲାଗି ଜଗନ୍ନାଥ ମୂର୍ତ୍ତି ଛୋଟ ଟେବୁଲ ଉପରେ ସଜ୍ଜା ହୋଇ ରହିଛି । ପାଖରେ ମେଞ୍ଚେ ଫୁଲ ଥୁଆ ହୋଇଛି ।

ଏହି ସମୟରେ ମୁଣ୍ଡ୍ ବାବୁ ଧଡ଼ କରି ଅଫିସ ଭିତରେ ପଶିଗଲେ । ଧଳା ଛକ ଛକ ପାଟ ଲୁଗାଟା ପିନ୍ଧିଛନ୍ତି । ଦେହରେ ଦାମୀ ଚାଦରଟା ପଡ଼ିଛି । କାନ୍ଧର ପଇତା ଅଣ୍ଟା ତଳ ପର୍ଯ୍ୟନ୍ତ ଝୁଲି ଆସିଛି । ବଡ ପାଟିରେ ମନ୍ତ୍ର ପଢ଼ି ଜଗନ୍ନାଥ ମୂର୍ତ୍ତିକୁ ପାଣି ଛିଞ୍ଚିବାରେ ଲାଗିଗଲେ ।

ଲୁଗା ବଦଳାଇ ଫୁଲ ଦେଲା ବେଳକୁ ଦିନା ଆଉ ଜଗା କ୍ରୋଧ ମିଶ୍ରିତ ଆଖିରେ ଚାହିଁ ରହିଥିଲେ ଜଗନ୍ନାଥ ଫଟୋ ଆଡ଼କୁ । ପୂଜା ସାରି ଥାନା ବାବୁ ପୁଣି ଜୋରରେ ପାଦ ପକାଇ ବସାଆଡ଼କୁ ଚାଲିଗଲେ ।

ଜଗା କାକା ଆଡ଼କୁ ଦିନା ଚାହିଁଲା । ଦିନାକୁ ଦେଖାଇ ଜଗା କହିଲା,- " ଦେଖ ଦେଖ ସେ ଦେବତା କେମିତି ଢିମା ଢିମା କରି ଆମ ଆଡ଼କୁ ଚାହିଁଛି । ଆମ ବିଷୟରେ ସବୁକଥା ଯେମିତି ସେ ଥାନାବାବୁକୁ କହିଦେବ ।" ଦିନା ହୋ ହୋ କରି ହସି ଦେଲା ବେଳକୁ ତଳି ପେଟଟା ଆହୁରି ଜୋରରେ କାଟିଦେଲା । ସେ "ଆନାୟୋ" କହି ପାଟିକରି ଉଠିଲା । ଶଳେ ବୁଟରେ ସେହି ଜାଗାକୁ ମାରି ମାରି ବଥା କରିଦେଇଛନ୍ତି ।

ତା' ପରଦିନ ସମ୍ବାଦପତ୍ରରେ ହେଡ୍ ଲାଇନ ଥିଲା, "କାଶୀପୁରର ଟିକିରି ଅଞ୍ଚଳରୁ ଦୁଇ ଦୁର୍ଦ୍ଦାନ୍ତ ମାଓବାଦୀ ଗିରଫ ।" ପୁଣି ତଳକୁ ଲେଖା ଅଛି, 'ବିଏସଏନଏଲ ଟାୱାର ଉଡ଼ାଇ ଦେବାକୁ ଧମକ ଦେଇ ପୋଷ୍ଟର ଲଗାଉଥିଲାବେଳେ ରାତ୍ରି ପେଟ୍ରୋଲିଂ ସମୟରେ ଦୁଇ ମାଓବାଦୀ ମୁନିଲ ଓରଫ ଶ୍ରୀ ଦିନା ମାଝୀ ଓ ସନ୍ତୋଷ ଓରଫ୍ ଶ୍ରୀ ଜଗା ମାଝୀ ପୁଲିସ ହାତରେ ଧରା ପଡ଼ିଲେ । ଗିରଫ ବେଳେ ସେମାନଙ୍କ ହାତରୁ ୨ଟି ଲ୍ୟାଣ୍ଡମାଇନ୍‌ସ, ୨ଟି ଗ୍ରାନାଇଟ୍ ବୋମା, କିଛି ତାର, ଲିଫ୍‌ଲେଟ୍ ଓ ଅନ୍ୟାନ୍ୟ ଆପତ୍ତିଜନକ କାଗଜ ଜବତ କରାଯାଇଛି ବୋଲି ରାୟଗଡା ଏସପିଙ୍କ ସୂତ୍ରରୁ ପ୍ରକାଶ ।'

ଏହା ପରେ ବେଶ କିଛି ମାସ ବିତିଗଲାଣି । ଟିକିରି ଥାନା ଅଧିକାରୀ ଶ୍ରୀଯୁକ୍ତ ବିବେକ ମୁଣ୍ଡଙ୍କୁ ପଦୋନ୍ନତି ସହିତ ବୃହତ ଶିଳ୍ପାଞ୍ଚଳକୁ ବଦଳି କରାଯାଇଛି । ଦିନା ଆଉ ଜଗାର ଜାମିନ କିନ୍ତୁ ହୋଇପାରୁନାହିଁ । କମ୍ପାନୀ ସେମାନଙ୍କ ଜମିରେ ଖୁସିରେ କାମ କରିଚାଲିଛି ।



# ଟିରୁ ମାଝୀର ସମାଧି

ଆପଣ ଯଦି କେତେବେଳେ ଭବାନୀପାଟଣା ଆଡୁ କୋରାପୁଟ ସିଧା ଆସିବାକୁ ଭାବୁଥା'ନ୍ତି ତେବେ ଇନ୍ଦ୍ରାବତୀ ଆପଣଙ୍କୁ ମଝିରାସ୍ତାରେ ଓଗାଳିଦେବ । ତେଣୁ ଡାହାଣକୁ ଗଲେ ଆପଣ ନବରଙ୍ଗପୁର ତା'ପରେ କୋରାପୁଟ ଯିବେ । ବାଁ ହୋଇ ଯିବାକୁ ଚାହିଁଲେ ଆସିବ କାଶୀପୁର । ତା'ପରେ ଖାଲଢିପ ଉଠାପକା ଖରାଦିନିଆ ରାସ୍ତା ପରେ ଗୋଟେ ସରୁ ନଦୀ ଉପରେ ଥିବା ବ୍ରିଜ୍‌ଟିକୁ ପାରି ହୋଇଗଲେ ରାସ୍ତାର ମଝିଆଡ଼କୁ ଗୋଟେ ଗାଁ ପାଇବେ । ତା'ର ନାମ ବାରିଗାଁ । ଗାଁର ନାମକରଣ ଏପରି କାହିଁକି ହେଲା ତା' ମୋତେ ଜଣା ନାହିଁ । ତେବେ ରାସ୍ତାରେ ଗଲାବେଳେ ଗାଁର କେତେକ ଘର ଉପରେ ହଳଦିଆ ପତାକା ଉଡୁଥିବାର ଦେଖିଲେ ଆପଣ ଜାଣିବେ ବାରିଗାଁ ଆସିଗଲା । ଗାଁ ପହଞ୍ଚିବା ଆଗରୁ ଛୋଟ ନୁଆଁଣିଆ ଚାଳଛପର ମନ୍ଦିରଟିଏ ଅଛି । (ହୁଏତ ଆପଣ ତାକୁ ମନ୍ଦିର କହି ନପାରନ୍ତି) ତା' ଉପରେ ସେମିତି ଉଡୁଛି ଏକ ହଳଦିଆ ପତାକା । ତା' ପାଖକୁ ଲାଗି ରହିଛି ସମାଧିଟିଏ । ସମାଧିର ଉପରେ ଲେଖାଅଛି ଟିରୁ ମାଝୀ ଓ ତା'ର ମୃତ୍ୟୁର ତାରିଖ ।

ଆଦିବାସୀ ଜୀବନରେ ଜନ୍ମ ଓ ମୃତ୍ୟୁର ତାରିଖ କେହି ମନେରଖନ୍ତି ନାହିଁ । ମୃତବ୍ୟକ୍ତିର ଶୁଦ୍ଧିକ୍ରିୟା ପରେ (ତାହା ଯେ ଦଶଦିନ ପରେ ହେବ ସେମିତି କିଛି ନିୟମ ନାହିଁ । ମାସେ ପରେ ହୋଇପାରେ, ବର୍ଷେ ପରେ ବି ହୋଇପାରେ) ସମସ୍ତେ ଭୁଲିଯାଆନ୍ତି ମୃତବ୍ୟକ୍ତିର ମାସ ଓ ଦିନକୁ । କାରଣ ସମୟ ଯିବା ସହିତ ଜୀବନ ଆସିଥାଏ ଆଉ ଯାଇଥାଏ । ଆଦିବାସୀ ଡୁମା ହୋଇଯାଏ । କିନ୍ତୁ ଟିରୁ ମାଝୀର ସମାଧି ଏହି ସହଜ ଜୀବନ ଭିତରେ ଏକ ନିଆରା ଘଟଣା । ମୋ ପାଇଁ ସେ ଥିଲା ସଂପୂର୍ଣ୍ଣ ନିଆରା, କାରଣ ବାରିଗାଁର ସେହି ଆଦିବାସୀ ସ୍କୁଲ ଥିଲା ମୋ ଚାକିରି ଜୀବନର ଆରମ୍ଭ ।

ସ୍କୁଲ କହିଲେ ରାସ୍ତା ଉପରୁ ଆରମ୍ଭ ହୋଇଯାଇଥିବା ଡଙ୍ଗରରୁ ଖଣ୍ଡେ କାଟି ସମାନ କରି ତିଆରି ହୋଇଥିଲା ଦୁଇବଖରା ଘର । ପୁଣି ମୋର ପୂର୍ବର ଶିକ୍ଷକଜଣକ ଥିଲାବେଳେ ସ୍କୁଲର ବାଡ଼ ଦେଇ ଅମୃତଭଣ୍ଡା ଗଛ ମେଞ୍ଚେ ଲଗାଇ ଦେଇଥିଲେ । ସେଥିରୁ ଭଣ୍ଡା ନେବାପାଇଁ ସ୍କୁଲ କମିଟିର ସଦସ୍ୟ କେହି, ସେହି ବାରିଗାଁବାସୀ, କିଏ କେମିତି ଆସିଲେ ମୋର ଦୁଇପଦ

କଥାବାର୍ତ୍ତା ହୁଏ । ସ୍କୁଲ ଛୁଟିହେଲେ ବାକି ସମୟ କେବେ ପାଖରେ ସେ ନଦୀଆଡ଼େ ଆଉ କେବେ ପାହାଡ଼ ଆଡ଼େ ଅଥବା କେବେ ରାସ୍ତାରେ ଯାଉଥିବା ଯାନମାନଙ୍କୁ ଚାହିଁ ନିଜ ଘରକଥା, ନିଜେ ଛାଡ଼ିଆସିଥିବା ପରିବାର କଥା, ଗାଁ କଥା, ଆଦିବାସୀଙ୍କ ଜୀବନକଥା ଭାବୁଥାଏ । ସଂଧ୍ୟା ଆସିବା ଆଗରୁ ନିଜ ପାଇଁ ପୁଣି ଚୁଲି ଲଗାଏ ।

ବାରିଗାଁର ଟିରୁ ମାଝୀ ମୁଁ ଦେଖିବାଦିନୁ ଏକୁଟିଆ, ପରିଶ୍ରମୀ, ସଦାବେଳେ କାମରେ ଲାଗିଥିବ । ତା'ର ବଗିଚାଟି ମୋର ସ୍କୁଲଠାରୁ କିଛି ଦୂରରେ । ତା'ର ବଗିଚା ତଳେ ବୋହିଯାଇଛି ସାନ ନଦୀଟିଏ । ଏଠି ନଦୀରେ ବର୍ଷସାରା ପାଣି । ନଦୀରୁ ପାଣି ବୋହି ଟିରୁ ତା'ର ବଗିଚାରେ ଭେଜି (ଛୋଟ ଟମାଟୋ), ଝୁଡୁଙ୍ଗ ଓ କେତେ କ'ଣ ଚାଷ କରିଥାଏ । ବେଳେବେଳେ ମୋତେ ଆଣି ତା' ବଗିଚାର ପରିବା ବିକେ । ସଦାବେଳେ ସେ ହଳଦିଆ ଗାମୁଛା ପିନ୍ଧିଥାଏ । କାନ୍ଧରେ ପଇତା ଥାଏ । ଆଣିଥିବା ପରିବା ସ୍କୁଲ ପିଣ୍ଡାରେ ଥୋଇଦେଇ ଟିକେ କଥାହୁଏ । କଥା ଭିତରେ ଗାଁ ବାହାରର କଥା ତା'ର ବେଶି ମନେପଡ଼େ । ଧର୍ମ କଥା ଆଲୋଚନା କରେ । ତାକୁ ଲାଗେ ମୁଁ ଧାର୍ମିକ ମଣିଷଟିଏ । ଶ୍ରେଣୀ ଘରେ ଦେବାଦେବୀଙ୍କ ଫଟୋ ଦେଖି ତାକୁ ଲାଗେ ପାଠ ପଢୁଥିବା ଲୋକେ ଧାର୍ମିକ । କଥାରେ କଥାରେ କହେ- "ଅଶିକ୍ଷିତ, ଆଦିବାସୀମାନେ ଧର୍ମ କ'ଣ ଜାଣନ୍ତି ନାହଁ ।" ତା'ର ଭାଷାରେ 'କନ୍ଧ ଅନ୍ଧ' ।

ସକାଳୁ ସକାଳୁ କୁକୁଡ଼ା ଡାକିବା ଆଗରୁ ଟିରୁ ସହିତ ବାରିଗାଁର ଆଉ କେତେଜଣ ନଦୀକୁ ଯାଆନ୍ତି । କି ଶୀତ କି ବର୍ଷା କିଛିକୁ ବି ସେମାନଙ୍କର ଖାତିର ନଥାଏ । ଇନ୍ଦ୍ରାବତୀ ଆଡୁ ଥଣ୍ଡା ପବନରୁ ନିଜକୁ ବଞ୍ଚାଇବା ପାଇଁ ସ୍କୁଲ ଘର ଝରକା ଫାଙ୍କରେ କନାବିଣ୍ଡା କେଞ୍ଚି ଆଉ ଘଡ଼ିଏ ଶୋଇବା ପାଇଁ ଚେଷ୍ଟା କଲାବେଳକୁ ବାରିଗାଁର ସାନ ନଦୀରୁ ସେମାନଙ୍କ ଫେରିବା ବେଳର ଓଁ ଭୂଃ ଭୁର୍ବଃସ୍ୱଃ.....ଗାୟତ୍ରୀମନ୍ତ୍ର ମୋ କାନରେ ବାଜେ । ପାହାନ୍ତିଆ ନିଦଟା ଫିକା ହୋଇଆସେ । ପୁଣି ସଂଧ୍ୟାରେ ଟିରୁର ବଗି ଚାଆଡୁ ଗାୟତ୍ରୀ ମନ୍ତ୍ରର ସ୍ୱର ଧିରେ ଧିରେ ଶୁଣାଯାଏ ।

ଦିନେ ସମୟ ଦେଖି ମୁଁ ସଂଧ୍ୟାବେଳେ ଟିରୁର ବଗିଚା ଆଡ଼େ ଯାଇଥିଲି । ବଗିଚା ଭିତରକୁ ପଶୁପଶୁ ଶୁଣିଲି, ଲବିନା ସମସ୍ତଙ୍କୁ ବହି ପଢ଼ି ଶୁଣାଉଛି- 'ପୁରାଣରେ ବର୍ଣ୍ଣିତ ଅଛି ଯେ ସୃଷ୍ଟି ପୂର୍ବରୁ ଭଗବାନଙ୍କ ନାଭିରୁ ଏକ କମଳ ଜାତ ହେଲା । କମଳରୁ ବ୍ରହ୍ମ ଜାତ ହେଲେ । ବ୍ରହ୍ମ ଦେହରୁ ଗାୟତ୍ରୀ ଜାତ ହେଲେ ।'

ବଗିଚାକୁ ମୁଁ ପଶିବା ଦେଖି ଟିରୁ ଦୌଡ଼ିଯାଇ ଛୋଟ ଖଟିଆଟିଏ ଟାଣିଆଣିଲା- 'ଏଇଟା ଆମର ନିତିଦିନିଆ କାମ । ଘରେ ପଛେ ଚୁଲି ଦିନେ ନ ଲାଗିବ ହେଲେ ସକାଳେ ସଂଧ୍ୟାରେ ପ୍ରାର୍ଥନା ଟିକେ ନକଲେ ଚଳିବ ନାହିଁ ।' ଖଟିଆଟି ପକାଉ ପକାଉ ଟିରୁ କହିଲା, ମୁଁ ସାନ ହସଟିଏ ଦେଲି । ସେଥର ବଗିଚାରେ ସେହି ଛୋଟ ଘରଟିକୁ ଚାହିଁ ଦେଖିଲି କାନ୍ଥରେ ଗାୟତ୍ରୀଙ୍କ ଫଟୋ, ସହିତ ଅନ୍ୟସବୁ ଦେବାଦେବୀ ଅଛନ୍ତି । ଗାୟତ୍ରୀମନ୍ତ୍ରର ଷ୍ଟିକର

ମଧ୍ୟ କାନ୍ଥରେ ମରାହୋଇଛି । ଗୋଟେ ବହି ଉପରେ ଏକ ସଫା ହଳଦିଆ କପଡ଼ା ଘୋଡ଼ାହୋଇଛି । ତା' ପାଖକୁ ଲାଗି ଜଳୁଥିବା ଧୂପକାଠିଟା ପ୍ରାୟ ପୋଡ଼ିହୋଇ ଆସିଥାଏ । "ସାର୍ ଆସିଲେ ଭଲହେଲା । ହେଲେ ଆଜି ଗୁରୁବାର । ଆମ ସମସ୍ତଙ୍କର ଉପବାସ । ତଥାପି ବଗିଚାରେ ବାଇଗଣ କିଛି ଅଛି । ଗଲାବେଳକୁ ନେଇଯିବେ," - ଟିରୁ ମୋ ଆଡ଼କୁ ଚାହିଁ କହିଲା ।

ହେଲେ ମୁଁ ସେମାନଙ୍କ ପ୍ରାର୍ଥନାରେ ବାଧା ଆଣୁଛି ଭାବି ବସିବା ଜାଗାରୁ ଶୀଘ୍ର ଉଠିଲା ବେଳକୁ ଲବିନା ବୁଝିପାରି କହିଲା- "ବସୁନାହାନ୍ତି ଆଜ୍ଞା, ଆମର ସଂଧ୍ୟାର କାମ ସରିଆସିଲାଣି ।" ଲବିନା ନାୟକ ବାରିଗାଁ କନ୍ଧ ଆଦିବାସୀ ପରିବାରମାନଙ୍କ ଭିତରେ ଅଳ୍ପ, କେତୋଟି ଦଳିତ ଡମ ପରିବାର ମଧ୍ୟରୁ ଜଣେ । କାନ୍ଧରେ ସିଲାଇ ମେସିନ୍‌ଟା ପକାଇ ମୋ ସ୍କୁଲ୍ ସାମ୍ନା ରାସ୍ତାରେ ହାଟପାଳିକୁ ହାଟପାଳି ଲକ୍ଷ୍ମୀପୁର ବଜାରକୁ ଯିବା ମୁଁ ଦେଖିଛି ।

ଗାୟତ୍ରୀ ଦିକ୍ଷା ସଂପର୍କରେ କଥା ହେଲାବେଳେ ଟିରୁ ଉତ୍ତର ଦେଇଥିଲା- 'ଗାୟତ୍ରୀ ଦିକ୍ଷାବାଲା ଆମେ ସମସ୍ତେ ସପ୍ତାହକୁ ଦୁଇଥର ଉପବାସ କରିବୁ । ଦିନକୁ ୧୦୮ ଥର ଗାୟତ୍ରୀ ମନ୍ତ୍ର ଜପିବୁ । ସକାଳେ ସଂଧ୍ୟାରେ ପ୍ରାର୍ଥନା ସରିଲେ ଯାଇ ନିଜ କାମକୁ ଯିବୁ । ମଦ କି ମାଂସ ଖାଇବୁ ନାହିଁ । ବାହାରେ କେବେ ରନ୍ଧା ଜିନିଷ ଖାଇବୁ ନାହିଁ । ଏତିକି ଆମର ଧର୍ମ ।'

"ଏଥିପାଇଁ ଆମକୁ ଗାଁବାଲାଏ ଧର୍ମବାଲା ବୋଲି ଡାକନ୍ତି ।" ସମସ୍ତଙ୍କ ଭିତରୁ ଅଖି କହିଲା । ସମସ୍ତେ ହସିଦେଲେ । ଅଖି କନ୍ଧ ଯୁବକ, ଟିରୁର କ'ଣ ସଂପର୍କ ଲାଗିବ ।

ବଗିଚାର ଘରକୁ ଲାଗି ଆରପାଖରେ ନୁଆଁଣିଆ ଚାଳଘରେ ବନ୍ଧା ହୋଇଥିବା ବଳଦମାନେ ନିଜର ଖୁରା ବାଡ଼େଇ ନିଜର୍ ଅସ୍ତିତ୍ୱ ଜାହିର କରୁଥାନ୍ତି । କିଛିଦୂରରେ କୁକୁରଟିଏ ମଧ୍ୟ କୁଁ କୁଁ କରି ତା'ର ଉପସ୍ଥିତିକୁ ଜଣାଉଥାଏ ।

ଆଲୋଚନା ଆଗକୁ ବଢ଼ାଇ ଲବିନା କହିଲା- "ଆମର ଆଜ୍ଞା ବ୍ରାହ୍ମଣ ଦରକାର ନାହିଁ । ଆମର ଗୁରୁ କହିଛନ୍ତି ଆମେମାନେ ସମସ୍ତେ ବ୍ରାହ୍ମଣ, ଦୀକ୍ଷା ନେଇଥିବା ଲୋକେ ଆମେ କାନ୍ଧରେ ପଇତା ପକେଇବୁ । ନିଜେ ନିଜେ ପୂଜାପାଠ କରିବୁ ।" ଲବିନାର ସେହି ବକ୍ତବ୍ୟ ଭିତରେ ଟିରୁ ମାଝୀର କାନ୍ଧରେ ଥିବା ପଇତାର ରହସ୍ୟକୁ ମୁଁ ସେଦିନ ଜାଣିପାରିଲି । ମୁଣ୍ଡ ଟୁଙ୍ଗାରି ମୁଁ ଶୁଣୁଥିବାର ସମ୍ମତି ଜଣାଇଲି ।

ସେହି ନୁଆଁଣିଆ ଘର ବାହାରେ ଅଣ୍ଡାରେ ତିନୋଟି ପିଲା ଜାକିଜୁକି ଲଣ୍ଠନ ପାଖରେ ବହି ମେଲାଇ ବସିଛନ୍ତି । ମୋର ଉପସ୍ଥିତି ସେମାନଙ୍କ ନିଦ୍ରୁଜ ହୋଇଆସୁଥିବା ଆଖିକୁ ଜବରଦସ୍ତି ଖୋଲିକରି ରଖିବା ପାଇଁ ବାଧ୍ୟ କରୁଥାଏ । ସେମାନଙ୍କ ଭିତରୁ ଟିରୁର ପୁଅ ଭୋଦୁ ଜଣେ । ଟିରୁର ବହୁତ ଇଚ୍ଛା ଭୋଦୁ ତା'ର କୋରାପୁଟର ବଡ଼ସ୍କୁଲରେ ପଢ଼ିପାରନ୍ତା କି ।

ମୁଁ ପିଲାଙ୍କ ପାଖକୁ ଉଠିଆସିବା ଭିତରେ ଗଞ୍ଜେଇର ସାମାନ୍ୟ ବାସ୍ନା ନାକରେ ବାଜିଲା । ଅନ୍ଭେବହୁତେ ସଂକୋଚରେ ସମସ୍ତେ ଗଞ୍ଜେଇର ଚିଲମକୁ ଆପଣାଇବାରେ ଲାଗିଲେ । ଘର ଉପରେ ହଳଦିଆ ପତାକା ବହୁଜୋରରେ ଫଡ଼୍‌ଫଡ଼୍ କରି ଉଡ଼ିବା ବେଳେ ଇନ୍ଦ୍ରାବତୀରୁ ବହିଆସୁଥିବା ପବନର ସୂଚନା ଦେଲା । ଏଥର ସଂଧ୍ୟା ଯାଇ ରାତି ଆସିବ । ସେଥର ମକା ଭଲ ହୋଇଥାଏ । ଦିନେ ମଞ୍ଚାକୁ ନ ଗଲେ ଭାଲୁ ରାତି ଭିତରେ ସବୁ ଖାଇଦେବ ।

ମୋତେ ମଧ୍ୟ ସ୍କୁଲକୁ ଫେରିବାର ଅଛି । ଅଖି ମୋତେ ଛାଡ଼ିବାକୁ ଆସିବା ଭିତରେ ତାକୁ ପଚାରିଲି- "ଗାୟତ୍ରୀ ଧର୍ମ ଏ ଗାଁରେ କେବେଠାରୁ ଆସିଲାଣି ?"

କହିବାକୁ ଲାଗିଲା - 'ଟିରୁ ଆଜ୍ଞା ଏଠି ଗାୟତ୍ରୀ ମଞ୍ଜି ପୋତିବାବାଲା । ସେହି ଆମମାନଙ୍କୁ ହଳଦିଆ ଲୁଗା ପିନ୍ଧାଇଲା । ଲକ୍ଷ୍ମୀପୁର ପାଖ ବୁର୍ଜାରେ ଆମର ଗୁରୁ ହରିଦ୍ୱାରରୁ ଆସି ସମୟ ସମୟରେ ରୁହନ୍ତି । ତାଙ୍କଠାରୁ ସିଏ ଆଗେ ଦୀକ୍ଷା ନେଲା, ତା'ପରେ ଆମେ ସମସ୍ତେ ।'

"ଗାୟତ୍ରୀ ଧର୍ମ କ'ଣ ଭଲଲାଗୁଛି ?" ମୁଁ ପଚାରିଲି । ଅଖି ତୁରନ୍ତ ଉତ୍ତର ଦେଲା- "ଭଲଲାଗୁଛି କ'ଣ ଆଜ୍ଞା, ଧର୍ମ କ'ଣ ଏବେ ଜାଣୁଛୁ ?" ମୁଁ ଥମ୍‌କରି ରହିଗଲି । ମୋ ମନର ନୀରବତା ଅଖି ହାତର ଠେଙ୍ଗାର ଠୁକୁଠୁକୁ ଶବ୍ଦକୁ ଅନୁସରଣ କରୁଥିଲା । ସ୍କୁଲ ଆସି ଯାଇଥିବା ଜାଣି ଅଖି ତା'ର ଠେଙ୍ଗାଟିକୁ ବାଡ଼େଇ ବାଡ଼େଇ ଚାଲିଗଲା । ସାଥିରେ ତା'ର ପ୍ରିୟ କୁକୁର । ଆଉ ମୁଁ ଭାବୁଥିଲି ଗାୟତ୍ରୀ ଏ ଗାଁକୁ ଆସିବା ଆଗର କଥା ।

ସ୍କୁଲ ଗେଟ୍ ଖୋଲୁ ଖୋଲୁ ମୋ କାନରେ ବାଜୁଥିଲା ଗାଁର ଧାଙ୍ଗିଡ଼ିମାନଙ୍କର ସ୍ୱର । 'ଆଦେ ଦାଇଲ ବାଡ଼ାରେ ବେଇଲମାନେ ଉର୍‌କିହାନ- (ଆସ ସାଙ୍ଗମାନେ ସକାଳ ଯାଏଁ ନାଚିବା) ।' ଏଥର ପୁଷପରବ ଆସିବ । ଜହ୍ନ ଉଇଁଲେ ପୁଷ ପରବ । ଧାଙ୍ଗିଡ଼ିମାନେ ବହୁତ ଆଗରୁ ପ୍ରସ୍ତୁତିରେ ଲାଗିଗଲେଣି ।

ଏ ଭିତରେ ଟିରୁ ତା'ର ଧର୍ମବାଲାଙ୍କ ସହଯୋଗରେ ଅଯୋଧ୍ୟା ଯାଇ ଇଟା ଥୋଇ ଆସିଥାଏ । ଟ୍ରେନ୍‌ରେ ତା'ପରି ଶହଶହ ଲୋକ ଯାଉଥିବା କଥା କହୁଥିଲା । କିଛିଦିନ ପରେ ଜାଣିଲା ଅଯୋଧ୍ୟାରେ କ'ଣ ଗୋଟେ ବଡ଼ ଘଟଣାଟେ ହୋଇଗଲା । ତାକୁ ମାତ୍ର ସବୁକଥା ଜଣାନଥିଲା ।

ଅଯୋଧ୍ୟାରୁ ତା'ର ଫେରିବାପରେ ପୁଣି କିଛିଦିନ ଚାଲିଯାଇଛି । ମୁଁ ମୋର ସ୍କୁଲ କାମରେ ବ୍ୟସ୍ତ ଥାଏ । ଆଗକୁ ପୁଣି ଡିଆଇଙ୍କ ଇନ୍‌ସପେକ୍ସନ ଥାଏ । ଦିନେ ଅଖି କିଛି ଭେଜି ନେଇ ସ୍କୁଲକୁ ଆସିଲା । ଆଜ୍ଞା ଗୁରୁ ଦେଇଛି । ଟିଲୁକୁ ଗାୟତ୍ରୀ ଦୀକ୍ଷା ନେଇଥିବା ଲୋକ ଗୁରୁ ଡାକନ୍ତି । ମୁଁ ପଚାରିଲି- "ହେଲେ ଟିରୁ କାହିଁକି ଆସିଲା ନାହିଁ ?" ଅଖି ସେଥର ଜଣାଇଲା ଟିରୁର ଦେହ ବହୁତ ଖରାପ । ଖାଲି କାନ୍ଦୁଛି, ତା'ସାଙ୍ଗକୁ ପେଟ ବ୍ୟଥା ମଧ୍ୟ ବଢ଼ିଯାଇଛି ।

- 'ଟିରୁକୁ ରାୟଗଡ଼ା କି କୋରାପୁଟ ନେଲେ ହେବ କି ?'

- 'ହୁଅନ୍ତା ଯେ ହେଲେ ସେ ନିଜେ ମନାକରୁଛି । ଆମକୁ ଆଜ୍ଞା ବହୁତ ଡର, ସେ ଦୂର ଡାକ୍ତରଖାନା । ଗାଁବାଲାଏ ଗୁଣିଆ ଡାକି ଚେରମୂଳି କରୁଛନ୍ତି । କିଛି କାମଦେଉନି ।'

ଅଖି ଯିବାପରେ ମୋର ମନଟା ଘାଣ୍ଟିହେଲା । ପରଦିନ ରୋଷେଇ ଦିନରୁ ସାରିଦେଇ ଟିରୁର ବଗିଚାଆଡ଼େ ଚାଲିଗଲି । ମୁଁ ପହଞ୍ଚିଲା ବେଳକୁ ବହିପଢ଼ା ସରିଯାଇଥାଏ । ଆଲୋଚନା ଚାଲିଥାଏ । ଗାଁର ସୂତୀ ମାଝୀ ପଚାରୁଥାଏ ଆମର ମଧ୍ୟ ପୁଷ ପରବ, ଭୋଦ ପରବ, ଚଇତି ପରବ ଅଛି । ଆମର ସୁନୁକୋଡ଼ି ଦେବୀ ଅଛନ୍ତି । ଏ କ'ଣ ଆମର ଧର୍ମ ନୁହେଁ ?

ସୂତୀ କନ୍ଧପିଲା । ଆବାସିକ ସ୍କୁଲରେ ପାଞ୍ଚଯାଏ ପଢ଼ିଛି । ଲବିନା କିନ୍ତୁ ସୂତୀକୁ ବୁଝାଉଥାଏ, ଧର୍ମ ଏସବୁରେ ନାହିଁ । ମଣିଷର ଧର୍ମ ଅଛି ମନରେ, ପ୍ରାଣରେ, ଶରୀରରେ ଓ ଚେତନାରେ । ସେଥିପାଇଁ ତ ଗୁରୁଦୀକ୍ଷା ଦେଲାବେଳେ ଆମକୁ କହିଛନ୍ତି, 'ଓଁ ଭୂଃ ଭୁର୍ବଃସ୍ୱଃ.... ।' ଦୂରରୁ ଟିରୁର କାଶ ମଧ୍ୟ ତା' ସାଙ୍ଗକୁ ଶୁଣାଯାଉଥାଏ ।

ଏଥର ଚୈତ୍ର ମାସରେ ଗାୟତ୍ରୀ ବିଶ୍ୱାସୀମାନେ ଜଣେ ଜଣେ ଏକକୋଟି ଗାୟତ୍ରୀ ମନ୍ତ୍ର ଜପ ପାଇଁ ସଂକଳ୍ପ ନେଇଛନ୍ତି । ଏହା ସହିତ ନିଜ ଗାଁରେ ପାଞ୍ଚକୁଣ୍ଡୀୟ ଯଜ୍ଞ କରିବେ । ହରିଦ୍ୱାରରୁ ଏଥିରେ ବଡ଼ ଗୁରୁ ଆସିବେ । ଆଖପାଖ ଗାଁର ଲୋକେ ନଦୀରୁ ପାଣି ଆଣିବେ । ଯଜ୍ଞ ଟିରୁର ବଗିଚାରେ ହେବ । ସେହିଠାରେ ପୁଣି ଗାୟତ୍ରୀ ମନ୍ଦିର ତୋଳା ହେବ । ଯଜ୍ଞ ପାଇଁ ଚାନ୍ଦା ଆଦାୟ ଚାଲିଛି । ସେଥିପାଇଁ ନୂଆ ସଦସ୍ୟ ହେବା ଦରକାର । ସୂତୀ ଟିକିଏ ଦ୍ୱନ୍ଦ୍ୱରେ ରହୁଛି । ଗାୟତ୍ରୀ ଦୀକ୍ଷା ସେ ସେହି ବର୍ଷ ନେବ କି ନାହିଁ ଭାବୁଛି । ପାଖରେ ବସି ଲବିନା ହିସାବ କରୁଛି ଯଜ୍ଞରେ କେତେ ଖର୍ଚ୍ଚ ହେବ, କିଏ କେତେ ଦେବେ । ତା' ହିସାବରେ ଏବେ ବାରିଗାଁରେ ପାଞ୍ଚଜଣ, ବାଘମାରୀରେ ଚାରିଜଣ, ଶଙ୍କରଡ଼ାରେ ଦଶଜଣ, ପିପଳପଦରରେ ଆଠଜଣ ସଦସ୍ୟ ଅଛନ୍ତି । ଯାହା ଛପରରେ ହଳଦିଆ ପତାକା ଉଡୁଛି ସେସବୁ 'ଆମ ଲୋକ' । ବଗିଚାକୁ ଲାଗି ଆଉ କିଛିଲୋକ ମଧ୍ୟ ଅନ୍ଧାରରେ ବସିଛନ୍ତି । ସେମାନେ ଟିରୁର କୁଟୁମ୍ବ ।

ଟିରୁର ଖଟିଆ ପାଖରେ ବସି ଡାକ୍ତରଖାନା ଯିବା ପାଇଁ ତାକୁ ଯେତେ ବାଧକଲି- "କିଛି ଦରକାର ନାହିଁ ଆଜ୍ଞା, ଆମେ ଦେଶିଆ ଲୋକ, ଏଇଠି ଆମର ଔଷଧ ।" ସେ ପୁଣି ଉତ୍ସାହିତ ହୋଇ କହିଲା- "ଗାଁରେ ଗୋଟେ ଯଜ୍ଞ କରିବା ପାଇଁ ବହୁତ ଦିନରୁ ଇଚ୍ଛା ଅଛି ଆଜ୍ଞା । ସେଥିପାଇଁ ବହୁତ ଟଙ୍କା ଦରକାର । ତା'ପରେ ଦେଖିବେ ସମସ୍ତେ ଆମ ଧର୍ମ ନେବେ । ଏଠି ମନ୍ଦିରଟିଏ ହେଲେ ସମସ୍ତେ ବସାଉଠା କରିବେ । ଗାଁ ବାଲାଙ୍କ ପର୍ବ କି ବାହା କି ଶୁଦ୍ଧିକ୍ରିୟା ହେଲେ ଆମ ଲୋକ ସେଠିକି ଯିବେନାହିଁ । କନ୍ଧଙ୍କ ପୂଜାରେ ରକ୍ତଟିକେ କି ମହୁଲି ମଦଟିକେ ମାଟିରେ ନ ଥୋପିଲେ ପୂଜା ହେବନାହିଁ । ଆମର ମଦ ମାଂସକୁ ଛୁଇଁବା ମନା ।" ଏ ଭିତରେ ସେ କେତେଥର ମଧ୍ୟ କାଶି ସାରିଲାଣି ।

ମୁଁ ଟିରୁର ମୁଣ୍ଡରେ ହାତ ବୁଲାଇ ଆଣିଲାବେଳକୁ ଟିରୁ ଫିସ୍‌ଫିସ୍ କରି କହିଲା- "ଆଜିକାଲି ଭୋଦୁର ମା'କଥା ବେଶି ମନେପଡୁଛି ।" ଭୋଦୁର ଜନ୍ମର ପରବର୍ଷ ଟିରୁର ସ୍ତ୍ରୀ ଝାଡ଼ା ଓ ଜ୍ୱରରେ ଚାଲିଯାଇଥାଏ । ସେବର୍ଷ ଆଉ କେତେଲୋକ ମଧ୍ୟ ମରିଥିବା କଥା ଶୁଣିଥିଲି । ଡାକ୍ତରଖାନା ପାଖରେ ଥିଲେ ସ୍ତ୍ରୀ ତା'ର ବଞ୍ଚିଯାଇଥାନ୍ତା ବୋଲି ଆଗରୁ ଥରେ ଦୁଇଥର କହିଛି ।

ଦୁଇଦିନ ପରେ ଗାଁର ପିଲାଟିଏ ଆସି ଖବରଦେଲା ଟିରୁ ଚାଲିଗଲା । ମୋର ଛାତି ଧଡ଼କିନା ହୋଇଗଲା । ମୋର ନିଜର ଜଣେ କେହି ଚାଲିଗଲା ପରି ମୋତେ ଲାଗିଲା । ଗାଁରେ ଯଜ୍ଞ କରିବ, ମନ୍ଦିର ତୋଳିବ ବୋଲି ଟିରୁ ବହୁତ ପରିଶ୍ରମ କରୁଥିଲା । ଦେହ ଖରାପବେଳେ ଡାକ୍ତରଖାନା ମଧ୍ୟ ସେ ଗଲାନାହିଁ । ସପ୍ତାହରେ ଦୁଇଦିନ ଉପବାସ ସାଙ୍ଗକୁ ଗଞ୍ଜେଇର ପ୍ରଭାବରେ ଟିରୁ ଦୁର୍ବଳ ହୋଇଯାଇଥିଲା । ଭାବିଥିଲା ଏଥିରୁ ଉଠିଯିବ ବୋଲି ମାତ୍ର ପାରିଲା ନାହିଁ ।

ମୁଁ ସ୍କୁଲ ଛୁଟି କରିଦେଇ ଗାଁଆଡ଼େ ଚାଲିଲି । ସେତେବେଳକୁ ଟିରୁର ଗାଁ ଲୋକେ ତାକୁ ଗାଁ ମଝି ତା' ନିଜ ଘର ସାମ୍ନାକୁ ଉଠାଇ ନେଇଛନ୍ତି । ଗାଁର କୁଟୁମ୍ବ ଭାଇମାନେ ଘର ଆଗରେ ନିଆଁ ଲଗାଉଥିଲେ । ଗାଁର କେହିଜଣେ ବାଜା ପିଟିବାରେ ଲାଗିଥାଏ । ଧାଙ୍ଗଡ଼ାମାନେ ଦୂର ଗାଁକୁ ଯିବା ଆରମ୍ଭ କରିଥା'ନ୍ତି । ପାଖାପାଖି ଗାଁର ଭଉଣୀ, ଭଣଜା, ଝିଆରୀ ଓ ପୁତୁରାମାନଙ୍କୁ ଖବର ଦିଆଗଲା । ସେମାନେ ଆସିଲେ ଶବ ଉଠିବ ।

ଗାଁର ଲବିନା, ଅଖିଳ, ସୂତୀ ଓ ଅନ୍ୟ ଧର୍ମବାଲା ଅଲଗା ଏକାଠି ହେଉଥାନ୍ତି । ସେମାନେ ପାଖ ଗାଁର ଗାୟତ୍ରୀବାଲାଙ୍କୁ ଏକାଠି କଲେ । ସେମାନଙ୍କ ଯୋଜନା ଯେ ଟିରୁର ଶରୀରକୁ ଗାୟତ୍ରୀ କର୍ମକାଣ୍ଡ ଅନୁସାରେ ଘିଅ, ଚନ୍ଦନ, ନୂଆଲୁଗା, ଫୁଲ, ଧୂପ, ତୁଳସୀପତ୍ର ଦେଇ ପୂଜା କରିବେ । ମନ୍ତ୍ର ପଢ଼ି ଟିରୁକୁ ତା'ର ବଗିଚାରେ ପୋଡ଼ିବେ । ଲବିନା ତା'ର ଗାୟତ୍ରୀ କର୍ମକାଣ୍ଡ ବହିଟିକୁ କାଖରେ ଜାକି ସମସ୍ତଙ୍କୁ ଡକାଡକିରେ ଲାଗିପଡ଼ିଛି ।

ଧର୍ମବାଲାଙ୍କ କଥା ଅନୁସାରେ ଅଖି ଯାଇ ଟିରୁର ଭାଇ ଆଗରେ କଥା ରଖିଲା । ଅଖିର କଥା ଶୁଣି ଟିରୁର କୁଟୁମ୍ବ ଭାଇମାନେ ରାଗିଗଲେ ।

- "ଟିରୁ ଆଗେ କନ୍ଧପିଲା, ତା'ପରେ ଧର୍ମବାଲା । ଗାଁ ମଶାଣିରେ ପୋଡ଼ା ନହେଲେ ଟିରୁର ବଂଶକୁ ଡୁମା ଲାଗିବ ।" ଦିଶାରୀ ମଧ୍ୟ କହିଦେଲା- "ଟିରୁକୁ ଗାଁ ମଶାଣିରେ ନ ପୋଡ଼ିଲେ ଟିରୁର ଡୁମା ତା' ଘରଲୋକଙ୍କୁ ଛାଡ଼ିବ ନାହିଁ ।" ଉଭୟପକ୍ଷର ଯୁକ୍ତି ହୋଇ ଶେଷରେ କଥାଯାଇ ଟିରୁର ଭାଇ ପାଖରେ ପହଞ୍ଚିଲା । ସେ କିନ୍ତୁ ଗାଁ ଭାଇଙ୍କ ଉପରେ କଥା ଛାଡ଼ିଦେଲା ।

ଧର୍ମବାଲାମାନେ ରାଗିକରି ଉଠିଆସିଲେ । ସେମାନେ ନିଷ୍ପତ୍ତି ନେଲେ- ସେମାନେ ଟିରୁର ଶୁଦ୍ଧିକ୍ରିୟା ଅଲଗା କରିବେ । ଟିରୁର ଶେଷଇଚ୍ଛା ପାଞ୍ଚକୁଣ୍ଡୀୟ ଯଜ୍ଞ ନିଶ୍ଚୟ ହେବ ।

ଟିରୁର ବଗିଚାରେ ନହେଲେ ଅଖିର ବଗିଚାରେ ସେମାନେ ଗାୟତ୍ରୀ ମନ୍ଦିର ନିଶ୍ଚୟ ତୋଳିବେ । ସେଠି ସେମାନେ ଭୋଦୁକୁ ଦୀକ୍ଷା ଦେବେ । ଆଜିଠାରୁ ସେମାନେ ଅଧିକ ପରିଶ୍ରମ କରିବେ ଓ ବେଶି ସଞ୍ଚୟ କରିବେ ।

ଭୋଦୁ ତା'ର କାନ୍ଥ ଆଡ଼କୁ ମୁହଁ କରି ଭୋ ଭୋ କାନ୍ଦୁଛି । ଶବ ଉଠିଲାବେଳକୁ ସେ ପୁଣିଥରେ ହିକ୍କା ଉଠାଇ କାନ୍ଦିଉଠିଲା । ସେ ଜାଣିଲା ଯେ ବାପା ଆଉ ତା'ର ଆସିବ ନାହିଁ । ଗାଁର ଧର୍ମବାଲାଙ୍କୁ ଛାଡ଼ିଦେଲେ ବାକି ପୁରୁଷ ମହିଳା ସମସ୍ତେ ମଶାଣିଆଡ଼େ ଗଲେ । ମହିଳାମାନେ ଚାଉଳ ଆଉ ନୂଆ ଲୁଗା ଧରିଛନ୍ତି । ପୁରୁଷମାନେ କାନ୍ଧରେ ଦୁଇଦୁଇଟା କାଠ । କୁଟୁମ୍ବର କାଠରେ ସେମାନେ ଟିରୁକୁ ପୋଡ଼ିବେ ।

ଧର୍ମବାଲା କିନ୍ତୁ ଦଶଦିନରେ ଦଶାହ କଲେ ଓ ତା'ସାଙ୍ଗକୁ ଯଜ୍ଞ ମଧ୍ୟ । କୋରାପୁଟ ଓ ଲକ୍ଷ୍ମୀପୁରଆଡୁ କିଛି ଗାୟତ୍ରୀଧର୍ମୀ ସେହି କାର୍ଯ୍ୟକ୍ରମରେ ଯୋଗଦେଲେ । ସେହି ନୂଆଁଣିଆ ଚାଳଘର ଆଗରେ ଆଉ ଏକ ନୂଆଁଣିଆ ଚାଳଘର ମନ୍ଦିର ଭାବରେ ଠିଆହେଲା ଓ ତା' ପାଖକୁ ଲାଗି ଟିରୁର ସମାଧି ।

ଯଦି ଆପଣ କେବେ ସେହି ରାସ୍ତାରେ ଯାଉଥାନ୍ତି ତେବେ ଚାଳଘରକୁ ଲାଗି ଟିରୁର ସମାଧି ଆପଣଙ୍କୁ ନିଶ୍ଚୟ ଟିରୁର କାହାଣୀ କହିବ । ମୁଁ କିନ୍ତୁ ମୋର ବଦଳି ପରେ ଆଉ କେବେ ବାରିଗାଁକୁ ଯାଇନାହିଁ ।



# ନିଆଁ

ଷ୍ଟେଜ ଉପରୁ କଳାରଙ୍ଗର ପରଦା ଧୀରେ ଧୀରେ ଉଠିବାରେ ଲାଗିଲା । ଏକକ ଅଭିନୟ ପ୍ରତିଯୋଗିତାର ଶେଷ ପ୍ରତିଯୋଗୀଙ୍କ ନାମ ଘୋଷଣା ସରିଛି । ବରଗଡ଼ ଜିଲ୍ଲା ପଦମପୁର ଅଞ୍ଚଳର ପ୍ରମୋଦ ମେହେର । ସେ ନିଜର ନାଟକ ଦେଖାଇବା ପାଇଁ ଭିତରେ ପ୍ରସ୍ତୁତ ହୋଇଗଲେଣି । ନାଟକର ନାମ 'ନିଆଁ' । ଷ୍ଟେଜର ପରଦା ଉଠିଲା ବେଳକୁ ଦେଖାଗଲା, ଭିତରଟା ଅନ୍ଧାର । କେବଳ ଛୋଟ ବଲ୍‌ବଟିଏ ଜଳୁଛି । ପଛ ପରଦାରେ ଅଗ୍ନିଶିଖାର ଚିହ୍ନ । ତା'ସାଙ୍ଗକୁ କିଛି ନାଲି ଆଲୋକ ଜଳି ପରଦା ପଛରେ ନିଆଁ ଲାଗିବାର ଏକ ପରିବେଶ ସୃଷ୍ଟି କରିଦେଲା । ସେହି ପଛ ପରଦାରେ ଜଳୁଥିବା ନିଆଁର ଛବି ଘେରରେ ବେଶ୍ କିଛି କୋଠାବାଡ଼ି ରହିଥିବା ଜଣାପଡୁଛି । ଦୂରରୁ ବେଶ୍ କିଛି କୋଳାହଳ ମଧ୍ୟ ଶୁଣାଯାଉଛି । ପ୍ରମୋଦ ଏକ ସମ୍ବଲପୁରୀ ଧୋତି ସହିତ ଫୁଲ୍‌ହାତ ଗଞ୍ଜି ପିନ୍ଧି ଷ୍ଟେଜ ଉପରକୁ ପ୍ରବେଶ କରୁଛନ୍ତି । ଏହା ସହିତ ଆଉ କିଛି ଅଧିକ ଆଲୋକ ମଧ୍ୟ ଷ୍ଟେଜ ଉପରେ ଜଳିବାକୁ ଲାଗିଲା । ପ୍ରମୋଦଙ୍କ ମୁହଁର ଭାବରେ ବେଶ୍ ଖୁସି । ସେ ଅତି ଖୁସିରେ ଗଦ୍‌ଗଦ୍ ହୋଇ ଦର୍ଶକ ଆଡ଼କୁ ପଛକରି କହୁଛନ୍ତି ।

"ହେଇ ଦେଖ, ସେ ଆଡ଼କୁ ଦେଖ । ନିଆଁ କେମିତି ଜଳି ଆସୁଛି ।" ପୁଣି ଦର୍ଶକ ଆଡ଼କୁ ଚାହିଁ, "ରାସ୍ତାଘାଟ ନଦୀ ଡେଇଁ ସେ ନିଆଁ ମାଡ଼ିଆସୁଛି । ଦେଖ ଦେଖ ସେ ନିଆଁ କେମିତି ଜାଳି ଦେଉଛି ଘର, ବାଡ଼ି, ବନ୍ଧ, କାରଖାନାକୁ । ସେ ନିଆଁ ଆଜି ଲାଗିଛି ପ୍ରଦୂଷଣକାରୀ ଓ ନରହତ୍ୟାକାରୀ ସ୍ପଞ୍ଜ କାରଖାନା ଓ କ୍ରସରରେ, ବିଧ୍ୱଂସକାରୀ ଡ୍ୟାମରେ, ଖଣି ଓ ପ୍ଲାଣ୍ଟରେ, ଲାଞ୍ଚୁଆ ଅଫିସର ଓ ପୁଲିସର ପୋଷାକରେ । ସେ ନିଆଁ ଆଜି ଲାଗିଛି ଏ ଅଞ୍ଚଳର ସବୁଠୁ ଶୋଷଣକାରୀ ଲାଠ୍‌ର ଘରେ, ଜମି ନେଇଯାଇଥିବା ସାହୁକାରର  ଘରେ, କଳାବଜାରୀ କିରୋସିନି ଡିଲରର ଘରେ, ନଷ୍ଟ ଠିକାଦାରର କୋଠିରେ । ଦେଖ ଦେଖ ଆଜି ସେ ନିଆଁ କେମିତି ଏତେ ବର୍ଷର ଶୋଷଣ ଓ ଅତ୍ୟାଚାରକୁ ସହି ଚାଲିଥିବା ଜନଗଣର କ୍ରୋଧରେ ବଢ଼ିବାରେ ଲାଗିଛି । ଦେଖ ସେ ନିଆଁ ଆଦୌ ଲିଭିବାର ନାମ ମଧ୍ୟ ଧରୁନାହିଁ । ପୁଲିସର ଗୁଳି, ଜେଲ୍‌ଖାନାକୁ ଯେମିତି ଟିକେ ବି ଖାତିର ନାହିଁ, ଧ୍ୱଂସ କରି ଚାଲିଛି ସେହି ଅହମିକାକୁ ।

ହଉ ଜଳୁଥାଉ । ଆହୁରି ଜୋରରେ ଜଳୁ । ନଜଳିବ ବା କେମିତି ? କେତେ ଯେ ଅତ୍ୟାଚାର ସହିଛି ଏ ଜନତା ! ତାହା କେମିତି ବ୍ୟର୍ଥ ଯିବ ।"

ପ୍ରମୋଦଙ୍କ ଦୃଢ଼ ପଦକ୍ଷେପ ହଠାତ୍ ବନ୍ଦ ହୋଇଗଲା । ଷ୍ଟେଜର ଏପାଖରୁ ସେ ପାଖ ଘୁରି ବୁଲୁଥିବା ପ୍ରମୋଦ ହଠାତ୍ ନିଶ୍ଚଳ ହୋଇଗଲେ । ପରଦାର ପଛପାଖେ ଜଳୁଥିବା ନିଆଁ ଚାପି ଆଲୋକଟି ଲିଭିଯାଇ କ୍ରମଶଃ ଏକ ମେଘୁଆ ପାଗର ପରିବେଶ ଷ୍ଟେଜ ଉପରେ ତିଆରିକଲା । କଳା ବାଦଲ ସାଙ୍ଗକୁ ଅଳ୍ପ ବିଜୁଳି ଓ ଘଡ଼ଘଡ଼ି । ଦୂରରୁ ଶୁଣାଯାଉଥିବା ଗହଳି ହଠାତ୍ ନୀରବ ହୋଇଗଲା ଓ ପବନର ଶବ୍ଦ ଶୁଣାଗଲା ।

ପ୍ରମୋଦ କହୁଛନ୍ତି "ଧେତ୍ ତେରିକା । ଏମିତି ସତେରେ ହୋଇଗଲା ! ସେମାନେ ସେ ନିଆଁରେ ପାଣି ପକେଇଦେଲେ । ଜଳୁଥିବା ନିଆଁକୁ ସେମାନେ ଧୂଆଁମୟ କରିଦେଲେ । ସବୁଠୁ ବଡ଼ ବଡ଼ ପ୍ରାସାଦ ପାଖକୁ ସେ ନିଆଁ ଯିବାବେଳକୁ ସେମାନେ ପାଣି ଢାଳିଦେଲେ । ସେମାନଙ୍କ ଅଟ୍ଟାଳିକାର କାଠ, ଲୁହା ଓ ଆଲୁମିନିୟମର ଜାଲି ଭିତରେ ରହିଥିବା ସଂପତ୍ତିରେ ନିଆଁ ଧରିବା ଆଗରୁ ସେମାନେ ପାଣି ଢାଳି ନିଆଁକୁ ଦୁଇଭାଗ କରିଦେଲେ ! ସେଥିପାଇଁ ସେମାନଙ୍କ ମନ୍ତ୍ରଣା ସେମାନେ ନିବୁଜ କୋଠରିରେ ଚଳେଇଥିଲେ । ହଠାତ୍ କିଛି ଆଶ୍ୱାସନା, ପୁଣି କିଛି ପ୍ୟାକେଜ, ଆଉ କିଛି ସୁବିଧା ଓ କିଛି ନୂଆ ପ୍ରତିଶ୍ରୁତି ସାଙ୍ଗକୁ ଜଣେ ଦୁଇଜଣଙ୍କୁ ଟିକେଟର ଲୋଭ ଦେଖାଇ ସେମାନେ ଟିଭି ଚ୍ୟାନେଲଗୁଡ଼ିକରେ ସିଧାସଳଖ ପ୍ରସାରଣ କଲେ । ସେମାନେ ନିଆଁକୁ ଲିଭାଇବାକୁ ପୁଣି ଥରେ ବଳପ୍ରୟୋଗ କରିବା ମଧ୍ୟ ଆରମ୍ଭ କଲେଣି ।"

ପ୍ରମୋଦଙ୍କ ସ୍ୱରରେ ଯଥେଷ୍ଟ ଦୁଃଖ ଓ ଅବସାଦ- "ସତରେ ଏତେ ଜୋରରେ ଜଳି ଆସୁଥିବା ନିଆଁକୁ ସେମାନେ ଥମେଇ ଦେବାରେ ସଫଳ ହେଲେ ।"

ପୁଣି ସେ ଦର୍ଶକଙ୍କ ଆଡ଼କୁ ଚାହିଁ କାନ୍ଦିବାର ସ୍ୱରରେ- "ପ୍ୟାକେଜକୁ ଗ୍ରହଣ କରିବା କି ନାଇଁ, ଆଶ୍ୱାସନାକୁ ସତ ବୋଲି ମାନିବା କି ନାଇଁ, ଶତ୍ରୁର ପ୍ରତିଶ୍ରୁତିକୁ ବିଶ୍ୱାସ କରିବା କି ନାହିଁ... କିଏ କାହାଠାରୁ ଅଧିକ ନିଷ୍ଠାପର, କିଏ ପ୍ରକୃତ ଜନଗଣଙ୍କର- ଏହି କଳହ ଓ ପ୍ରତିଯୋଗିତା ମଧ୍ୟରେ କ୍ରମଶଃ ନିଆଁ ଲିଭିବାକୁ ବସିଲାଣି । ପ୍ରକୃତ ଶତ୍ରୁ ଦୂରରେ ଥାଇ ଆରାମ କଲାବେଳକୁ ଏମାନେ ନିଜର ମିତ୍ରକୁ ଶତ୍ରୁ ମଣିଲେଣି । ପରସ୍ପର ବିରୋଧରେ ଅସ୍ତ୍ର ଧରିଲେଣି । ସେମାନେ ଦୂରରେ ଥାଇ ଅନୁଭବ କରିପାରୁଛନ୍ତି ଥମି ଆସୁଥିବା ଉଷ୍ମତାକୁ, ଖୁସି ମନାଉଛନ୍ତି ଏମାନଙ୍କ ଦ୍ୱନ୍ଦ୍ୱ ଓ କଳହକୁ ଦେଖି । ସେହି ଅଟ୍ଟାଳିକା ମଧ୍ୟରେ ଥାଇ ଏବେ ସେମାନେ ନିର୍ଲ୍ଲଜ ଭାବରେ ବିବୃତି ଦେବା ଆରମ୍ଭ କଲେଣି । ଏଥର ସେମାନେ ଦାୟୀ କରିବେ ବିରୋଧୀ ଦଳକୁ । କହିବେ ସବୁକିଛି 'ରାଜନୈତିକ ଷଡ଼ଯନ୍ତ୍ର' 'ଦେଶର ନିରାପତ୍ତା ପାଇଁ ଘୋର ବିପଦ' 'ବିକଶିତ ଭାରତ ପାଇଁ ଚ୍ୟାଲେଞ୍ଜ ।' ଯେତେବେଳେ ସବୁକିଛି ଶାନ୍ତ ପଡ଼ିଆସିବ ସେମାନେ ଖୋଜି ଖୋଜି ଆମର ମହିୟସୀମାନଙ୍କୁ ଟାଣିନେବେ ପୁଲିସର ଯନ୍ତ୍ରାକୁ,

ବିଚାର ବିଭାଗୀୟ ହାଜତକୁ ନଚେତ୍ ଏନ୍‌କାଉଣ୍ଟର କରିଦେବେ କେଉଁ ନଦୀ ଦାଢ଼ରେ ଅଥବା ଜଙ୍ଗଲର କେଉଁ କୋଣରେ । ଆସି କହିବେ ସେ ଆତ୍ମହତ୍ୟା କଲା ନହେଲେ କହିବେ ପୁଲିସର ଆତ୍ମରକ୍ଷା ପାଇଁ କରିବାକୁ ପଡ଼ିଲା । ଗୁଳିକରି ମାରୁଥିବା ପୁଲିସଟି ମାରିଲା ବେଳେ ଚିନ୍ତା କରିବାକୁ ସମୟ ପାଇବ ନାହିଁ ଯେ, ସେ ମାରୁଛି ତା'ରି ଶ୍ରେଣୀର ଜଣେ ଲଢୁଆ ସାଥିକୁ ।"

ଧୀରେ ଧୀରେ ଷ୍ଟେଜ ଅଳ୍ପ ଅନ୍ଧାର ହୋଇଗଲା ଓ ପ୍ରମୋଦ ଷ୍ଟେଜର ମଝିରେ ଗୁମ୍ ହୋଇ ଆଣ୍ଠୁରେ ହାତଦେଇ ବସିଗଲେ । ଅଳ୍ପ କିଛି ସମୟ ନିରବତା ପରେ ଘୁଂ ଘୁଂ ଶବ୍ଦ ଶୁଣାଗଲା । ଷ୍ଟେଜରେ ଆଲୋକ ଧୀରେଧୀରେ ପୁଣି ଜଳି ଷ୍ଟେଜକୁ ଉଜ୍ଜ୍ୱଳ କରିଦେଲା । ଘୁଂ ଘୁଂର ଶବ୍ଦ ବଢ଼ିଲା । ଥର ଥର ସ୍ୱରରେ ଆକୁଳ ଆବେଦନର ଭାବନା ନେଇ ଧୀର ସ୍ୱରରେ ପ୍ରମୋଦ ପୁଣି ନିଜର ବକ୍ତବ୍ୟ ଆରମ୍ଭ କଲେ । - "ହେଲେ ସବୁ କିଛି ସରିଯାଇ ନାହିଁ । କେବେବି ସରିଯିବ ନାହିଁ । ଏବେ ବି ଇଜ୍ଜତ, ସ୍ୱାଭିମାନ, ଅନ୍ୟାୟର ପ୍ରତିରୋଧ କରିବାର ଶକ୍ତି ଏ ମାଟିରେ ଅଛି । କେବେ ବି ଏ ନିଆଁ ଲିଭିବନି । ଯଦି ସେ ନିଆଁ ସତେରେ ଲିଭିଯାଇଥା'ନ୍ତା ତେବେ ତ ଏ ଦେଶ ନିଶ୍ଚୟ ଭରିଯାଇଥାନ୍ତା ଶୋଷକ, ଚାଟୁକାର, ବେସରମ ନେତା, ଭଡ଼ାଟିଆ ଗୁଣ୍ଡା ଓ ଠିକାଦାରଙ୍କ ଦ୍ୱାରା । ନା ! ନା ! ସେ ନିଆଁ ଏବେ ବି ଅଛି । ସୁନ୍ଦର ସମାଜର ସ୍ୱପ୍ନ ସବୁଠି ଅଛି । ପ୍ରତି କୋଣରେ ଅଛି । ମୋ ଭିତରେ ଅଛି । ତୁମ ଭିତରେ ଅଛି । ସେଠି ଅଛି, ଏଠି ଅଛି ।"

ପୁଣି ଦ୍ରୁତ ପଦଚାଳନା ସହିତ ନିଜର ଆବେଗଭରା ସ୍ୱରରେ ପ୍ରମୋଦ କହିଲେ- "ଆସ, ଏଥର କିନ୍ତୁ ଆମେ ସମସ୍ତେ ଜଳିବା । ସେମାନଙ୍କୁ ଏଥର ଚାଲାକ୍ ହେବାକୁ ଦେବା ନାହିଁ । ଆମେ ଏଥର ଚାଲାକ ହେବା । ଆମେ ଜାଳିପୋଡ଼ି ଧ୍ୱଂସ କରିଦେବା କ୍ଷମତାର ଚୌକି, ସୁଇସ୍ ବ୍ୟାଙ୍କର ଡିପୋଜିଟ୍‌କୁ, ଦଲାଲ ଷ୍ଟ୍ରିଟର ପୁଞ୍ଜିକୁ, ସେମାନଙ୍କ ସରକାରୀ ପ୍ରତିଷ୍ଠା ଓ ସୁରକ୍ଷାର ବଳୟକୁ । ସେମାନଙ୍କ ଘରେ ଗଚ୍ଛିତ ଥିବା ଆମର ସମ୍ପତ୍ତିକୁ ଆମେ ଦଖଲ କରିନେବା । ଆମେ ସମସ୍ତେ ସାଜିବା ଜଣେ ଜଣେ ରବିନହୁଡ୍ । ସେହି କଳା ସମ୍ପତ୍ତି ଦେବ ଗୃହଶୂନ୍ୟକୁ ଘର, ରୋଗୀକୁ ଚିକିତ୍ସା, ଭୋକିଲାକୁ ଖାଦ୍ୟ, ଭୂମିହୀନକୁ ଜମି, ବେକାର ଯୁବକକୁ ପୁଞ୍ଜି, ଆସ ଆମେ ଦେଖିବା ଏକ ସୁନ୍ଦର ସ୍ୱପ୍ନ ସୁସ୍ଥ ସମାଜର ।"

ପ୍ରମୋଦଙ୍କ ଆଖିରେ କ୍ରମଶଃ ଲୁହ ଆସିଗଲା । "ଆମର ବୃଦ୍ଧବୃଦ୍ଧାଙ୍କ ଭିତରେ ଫେରିଆସିବ ହସ । ଯୁବକ ଯୁବତୀଙ୍କ ଭିତରେ ଫେରିଆସିବ ନୂତନ ଗତିଶୀଳତା, ଦାଦନ ଯାଇଥିବା ଯୁବକ ଫେରିଆସିବ ତା'ର ଘରକୁ । ପୁଣି ଜଙ୍ଗଲଗୁଡ଼ିକ ପୂରିଯିବେ ଗଛଲତା ପକ୍ଷୀର କାକଳିରେ । ପିଲାମାନେ 'ବଡ଼ଲୋକ'ର ସ୍ୱପ୍ନ ଛାଡ଼ି ଫେରିଯିବେ ଚପଳତାକୁ । ଆମର ଇତିହାସ ଆମକୁ ପ୍ରେରଣା ଦେବ । ଆମର ସଂଘର୍ଷ ହିଁ ଆମକୁ ଦେବ ନ୍ୟାୟ ଓ ସମାନତା ।"

ପ୍ରମୋଦ ଏଥର ଦର୍ଶକ ଆଡ଼କୁ ଚାହିଁ କହିଲେ- 'ସତ କୁହ, ସତ କୁହ ତୁମେ ! ତୁମେ ଫୁଙ୍କି ପାରିବନା ସେ କୁହୁଳୁଥିବା ନିଆଁକୁ । ସତ କୁହ, ସତ କୁହ ତୁମେ ସାହସ କରିବ ନା ଆଉଥରେ ତୁମେ ଦେଖିଥିବା ସ୍ୱପ୍ନଗୁଡ଼ିକୁ ମନେପକାଇବାକୁ ? ସେମାନେ ଏଥର ପାରିବେନି । ମୋର ହୃଦୟ କହୁଛି ସେମାନେ ଏଥର ପାରିବେନି । ଆମେ ଏକାଠି ହେବା । ଆମେ ଏଥର ଜିତିବା ଓ ନିଶ୍ଚୟ ଜିତିବା ।"

ଧୀରେ ଧୀରେ ଷ୍ଟେଜ ଉପରେ କଳା ପରଦା ପଡ଼ିବାକୁ ଲାଗିଲା । ଶେଷ ପ୍ରତିଯୋଗୀ ପ୍ରମୋଦର ମନୋଆକ୍ସନ ସରିଆସିଲା; କିନ୍ତୁ ସରୁ ନାହିଁ ଦର୍ଶକଙ୍କ ତାଳି । ସମସ୍ତେ ନିଜନିଜ ଆସନରୁ ଠିଆ ହୋଇ ତାଳି ମାରୁଛନ୍ତି । ପ୍ରମୋଦର ମନୋଆକ୍ସନ ସମସ୍ତ ଦର୍ଶକଙ୍କୁ ଶିହରାଇ ଦେଇଛି । କେହି କେହିଙ୍କ ଆଖିରେ ଲୁହ ମଧ୍ୟ ଆସିଯାଇଛି । ଆଗଧାଡ଼ିରେ ବସିଥିବା ନିମନ୍ତ୍ରିତ ଅର୍ଥମନ୍ତ୍ରୀ, ଜିଲ୍ଲାପାଳ, ଅନ୍ୟ ପ୍ରଶାସକ ଓ ସ୍ଥାନୀୟ ବିଧାୟକ ମଧ୍ୟ ତାଳି ନମାରି ରହିପାରୁନାହାନ୍ତି ।

ଦର୍ଶକଙ୍କ କ୍ରମାଗତ ତାଳି ସାଙ୍ଗକୁ ଅତିଥିମାନଙ୍କର ଥିଏଟର ହଲ୍ ଛାଡ଼ି ଯିବାର ବ୍ୟଗ୍ରତା ମଧ୍ୟରେ ମା' ସମଲେଶ୍ୱରୀ ଯୁବ ପରିଷଦର କର୍ମକର୍ତ୍ତାମାନେ ହଡ଼ବଡ଼େଇ ଗଲେଣି । ବାର୍ଷିକ ଉତ୍ସବର ନିୟମିତ କାର୍ଯ୍ୟକ୍ରମ ଯେମିତି କି ବାର୍ଷିକ ବିବରଣୀ ପାଠ, ପରିଷଦର ନୂଆ ସଭାପତି ଘୋଷଣା, ବିଜୟୀ ସଭାପତିଙ୍କ ଭାଷଣ ସାଙ୍ଗକୁ ଭୁବନେଶ୍ୱରରୁ ଆସିଥିବା ନିମନ୍ତ୍ରିତ ଅତିଥି ରାଜ୍ୟ ଅର୍ଥମନ୍ତ୍ରୀଙ୍କ ଦୀକ୍ଷାନ୍ତ ଭାଷଣର ପର୍ବ ସରିଯାଇଛି । ଶେଷରେ ମନୋରଂଜନ କାର୍ଯ୍ୟକ୍ରମରେ ଏହି ଏକକ ଅଭିନୟର ପ୍ରତିଯୋଗିତା ଥିଲା ଯେଉଁଠି ବଛାବଛା ଆଠଜଣ କଳାକାର ପ୍ରତ୍ୟେକ ପାଞ୍ଚମିନିଟ୍ କରି ନିଜର ଅଭିନୟ ଦେଖାଇ ଥିଲେ । ପରିଶେଷରେ ସମସ୍ତ ଆଠଜଣ କଳାକାରଙ୍କୁ ନୂତନ ପରମ୍ପରା ଭାବରେ ମନ୍ତ୍ରୀଙ୍କ ଦ୍ୱାରା ସମ୍ମାନିତ କରିବାର ଯୋଜନା ଥିଲା । ଏହାପରେ ମନ୍ତ୍ରୀ ଫେରିଯିବେ । କିନ୍ତୁ ପ୍ରମୋଦର ଏକକ ଅଭିନୟ ପରିସ୍ଥିତିକୁ ବିଗାଡ଼ିଦେଲା । ଦର୍ଶକ ମହଲରେ ଉତ୍ସୁକତା ଆସିଯାଇଛି । ପ୍ରମୋଦ ଠାରୁ ସେମାନେ ଏପରି ଅଭିନୟର ପ୍ରେରଣା ସଂପର୍କରେ କିଛି ଶୁଣିବେ । ପଛରୁ ଦାବି ଆରମ୍ଭ ହେଲାଣି 'ପ୍ରମୋଦକୁ ଡକାଯାଉ', 'ଆମେ ତାଙ୍କ ଠାରୁ ଶୁଣିବୁ, 'ସେ କିଛି କୁହନ୍ତୁ' ଦର୍ଶକମାନେ ଆଉ ନିଜ ନିଜ ସ୍ଥାନ ଛାଡ଼ି ଯିବା ପାଇଁ ଆଗ୍ରହୀ ନୁହଁନ୍ତି । ହଲ୍ ଭିତର ପୁଣି କୋଳାହଳମୟ ହୋଇଗଲାଣି ।

ଏ ଭିତରେ ପରିଷଦର ନୂତନ ସଭାପତି ଦେବେନ୍ଦ୍ର ନାଥ ଆଞ୍ଚା ଅନ୍ୟ ସାଥିମାନଙ୍କ ସହିତ କିଛି ମନ୍ତ୍ରଣା କରି ମଞ୍ଚ ଉପରକୁ ଉଠିଗଲେ । ମଞ୍ଚର ଆଲୋକ ପୁଣି ଜଳି ଉଠିଲା । କଳାପରଦାକୁ ପୂରା ହଟାଇ ଦିଆଗଲା । ଦର୍ଶକଙ୍କ ଭିତରେ ପୁଣି ତାଳି ବର୍ଷିଲା । ନାଥ ଆଞ୍ଚା ତାରବିହୀନ ମାଇକ୍‌କୁ ଧରି ଷ୍ଟେଜ ଉପରକୁ ମନ୍ତ୍ରୀ ମହୋଦୟଙ୍କୁ ମଧ୍ୟ ଡାକିଲେ । ସଙ୍ଗେ ସଙ୍ଗେ ଦୁଇଟି ଭଲ ଚୌକି ଷ୍ଟେଜ ଉପରେ କର୍ମକର୍ତ୍ତାଙ୍କ ଦ୍ୱାରା ପଡ଼ିଗଲା ।

ଆଜ୍ଞା କହିବା ଆରମ୍ଭ କଲେ- "ବନ୍ଧୁଗଣ ! ଆମର ସମସ୍ତ କଳାକାରଙ୍କ ଅଭିନୟ ଥିଲା ଅତି ଉତ୍ତମ । ସେମାନେ ସମସ୍ତେ ନିଜନିଜର ଅଭିନୟ ଦ୍ୱାରା ଆମର ଦର୍ଶକଙ୍କୁ ବାନ୍ଧି ରଖିପାରିଲେ । ସେଥିପାଇଁ ସେମାନଙ୍କୁ ଧନ୍ୟବାଦ ଦେବି । ଏବେ କିନ୍ତୁ ସମସ୍ତ ପ୍ରତିଯୋଗୀଙ୍କୁ ମନ୍ତ୍ରୀଙ୍କ ଦ୍ୱାରା ଆମେ ସ୍ୱତନ୍ତ୍ର ଭାବରେ ସମ୍ମାନିତ କରିବାକୁ ଚାହୁଁ । ସମସ୍ତ ପ୍ରତିଯୋଗୀ ନିଜନିଜର ନାଟକ ସଂପର୍କରେ ମିନିଟିଏ ମାତ୍ର କହିବେ ।"

ସେହି ସମୟରେ ଦର୍ଶକଙ୍କ ମଧ୍ୟରେ କୋଳାହଳ "ଆଗେ ପ୍ରମୋଦ, ପ୍ରମୋଦ ଆଗେ ।"

ପ୍ରଥମ ଦୁଇଜଣ ପ୍ରତିଯୋଗୀଙ୍କ ପରେ ନାଥ ଆଜ୍ଞା ପ୍ରମୋଦଙ୍କ ନାମ ଡାକିଲେ । ପ୍ରମୋଦ ଷ୍ଟେଜ ଉପରକୁ ଆସି ମନ୍ତ୍ରୀଙ୍କ ହାତରୁ ଶାଲ୍ ଓ ନାମ ଫଳକଟି ନେବା ବେଳେ ଆଖିରେ ଲୁହ ଆସିଯାଇଥିଲା । ନାଥବାବୁଙ୍କ ହାତରୁ ମାଇକ୍ ଧରି ପୋଡିୟମ ପାଖରେ ଠିଆ ହୋଇ କହିବାକୁ ଆରମ୍ଭ କଲେ ।

– "ମୁଁ ପ୍ରମୋଦ ମେହେର, ମୋର ବାପାର ନାମ ଶ୍ରୀବତ୍ସ ମେହେର, ମୋର ବାପାଙ୍କୁ ମୁଁ ହତ୍ୟା କରିଛି ।" ଏତିକି କହି ପ୍ରମୋଦ ବହୁତ ଜୋରରେ କାନ୍ଦି ପକେଇଲେ । ଦର୍ଶକମାନେ ମଧ୍ୟ ହତଚକିତ ହୋଇ ନିଜନିଜ ସ୍ଥାନରେ ବସିବାକୁ ଆରମ୍ଭ କଲେ । ହଲ୍ ଭିତରେ ପୁଣି ନୀରବତା ଛାଇଗଲା । ଲୋକେ ଉତ୍ସୁକତାର ସହିତ ପ୍ରମୋଦଙ୍କ ପରବର୍ତ୍ତୀ ବାକ୍ୟକୁ ଶୁଣିବା ପାଇଁ ବ୍ୟଗ୍ର ହୋଇପଡ଼ିଲେ ।

ଆଖିରୁ ଲୁହ ପୋଛି ସେ ପୁଣି କହିଲେ- "ଏହା ବ୍ୟତୀତ ମୋର ଆଉ ବା କ'ଣ ପରିଚୟ ହୋଇପାରେ ।" ନାଥ ଆଜ୍ଞା ପ୍ରମୋଦର ସମୟ ହୋଇଯାଇଥିବା ହେତୁ ବନ୍ଦ କରିବାକୁ ଉଦ୍ୟତ ହେଉଥିଲେ । ମାତ୍ର ଦର୍ଶକଙ୍କ ଉତ୍ସୁକତା ଓ ପ୍ରମୋଦର ବିହ୍ୱଳତା ତାଙ୍କୁ ମଧ୍ୟ ସେଥିରୁ ବାରଣ କରିଲା । – "ମୁଁଇ ଆଜି ବହୁତ ଖୁସି ।" ପ୍ରମୋଦ ପୁଣି କହିବା ଆରମ୍ଭ କଲେ । "ଆପଣମାନେ ମୋର ଅଭିନୟକୁ ପସନ୍ଦ କଲେ । ହେଲେ ଏ ଅଭିନୟ ମୋ ପାଇଁ ଅଭିନୟ ନୁହଁ ସତ୍ୟକୁ ସାମ୍‌ନାକୁ ଆଣିବାର ରାସ୍ତା ଥିଲା । ଆଜି ମୁଁ ଜାଣୁଛି ମୁଁ ଏକା ନାଇଁ । ମୋର ସହିତ ଆପଣମାନେ ମଧ୍ୟ ଅଛନ୍ । ଆପଣମାନେ ମଧ୍ୟ ମୋର କଷ୍ଟକେ ଅନୁଭବ କରୁଛନ୍ ।"

'ମୋର ବାପା ନିଜର ପେନସନ ଲାଗି ବରଗଡ଼ ଜିଲା ଅଫିସ୍‌ନୁ ଭୁବନେଶ୍ୱରର ସେକ୍ରେଟେରିଏଟ, ମନ୍ତ୍ରୀଙ୍କ ଅଫିସତକ ଗଲେନ, ହେଲେ ବି ପେନ୍‌ସନ୍ ନାଇଁ ହେଲା । ସେ ମୋଟା ଲାଞ୍ଚ ଦେଇ ପେନ୍‌ସନ୍ କରିବା ଲାଗି ନାଇଁ ଚାହିଁଲେ । ତିରିଶ ବର୍ଷ ସରକାରଙ୍କ ସେବା କଲାପରେ ଜଣେ ଚାକିରିଆର କ'ଣ ଏଇଟା ଅଧିକାରନାଇଁନ ତା'ର ଅବସର ପରେ ସରକାର ତାକୁ ପେନ୍‌ସନ ଠିକ୍‌ସେ ଦେବେ ? ସରକାରର କ'ଣ ଏଇଟା ଦାୟିତ୍ୱ ନୁହେଁ ? ମୋର ବାପାର ସ୍ୱାଭିମାନ ତାଙ୍କୁ ଲାଞ୍ଚ୍ ଦେବାକୁ ମନାକଲା । ଲାଞ୍ଚ୍ ଦେଇଥିଲେ ମୋର ଆଗରେ ନ୍ୟାୟ ଓ ସତ୍ୟ ସପକ୍ଷରେ ସେ ବା ଯୁକ୍ତି କେମିତି କରିଥାନ୍ତେ ?

ସେହି ଲାଞ୍ଚ ମୁଁ ହୁଏତ ଦେଇଥିଲେ ଏକ ସରକାରୀ ଅଫିସର ହୋଇପାରିଥାନ୍ତି । କଟକର ଓପିଏସ୍‌ସି ଟେବୁଲ ଉପରେ ସାକ୍ଷାତକାର ସମୟରେ ପାଠରୁ ପ୍ରଶ୍ନ ନପଚାରି ଚୟନକର୍ତ୍ତାମାନେ ମୋତେ ପଚାରିଲେ- 'ତୁମର ବାପା କ'ଣ କରୁଛନ୍ତି ? ଜଣେ ସେଥିରୁ ପଚାରିଲେ ତୁମେ ଏହି ପୋଷ୍ଟ ପାଇଁ ସାତଲକ୍ଷ ଦେଇପାରିବ ? ମୋର 'ନା' ଶୁଣି ସେମାନେ ମୋତେ ଚୟନ ନାଇଁ କଲେ ।'

ହେଲେ ଲିଖିତ ପରିକ୍ଷାରେ ସବୁଠୁ ଅଧିକ ମାର୍କ ରଖିଥିବା କ୍ୟାରିୟର ଫାଷ୍ଟକ୍ଲାସ ଥିବା ପ୍ରମୋଦ ମେହେରର ନାମ ଯେ କାହିଁକି ଚୟନ ହେଲାନାହିଁ ସେକଥା ସରକାର ତଦନ୍ତ କଲେ ନାହିଁ । ସେହି ସମୟରେ ମୋର ବାପା ଘରର ଆର୍ଥିକ ପରିସ୍ଥିତି ଦୁର୍ବଳ ଦେଖି ପୁଣି ଥରେ ଜିଲ୍ଲା ଅଧିକାରୀଙ୍କ ପାଖରେ ପହଞ୍ଚିଲେ । ଜିଲ୍ଲା ଅଧିକାରୀବାବୁ ତିରସ୍କାର ସ୍ୱରରେ କହିଲେ- 'ମେହେରବାବୁ, ସରକାରଙ୍କ ପାଖରେ ଏବେ ଅର୍ଥ ନାହିଁ, ତୁମର ଚିଠି ଆସିଯାଇଛି । ଅର୍ଥର ସୁବିଧା ହେଲେ ସରକାର ତୁମକୁ ପେନ୍‌ସନ ଦେବେ । ଆମେ ତୁମକୁ ଜଣାଇ ଦେବୁ । ଏବେ ଆଉ ଏମିତି ଆସି ଆମର ସମୟ ଖାଅ ନାହିଁ ।'

"ମୋର ବେକାରୀ ସାଙ୍ଗକୁ ସରକାରଙ୍କ ତିରସ୍କାରରେ ମୋର ଅସହାୟ ବାପା ମାନସିକ ଭାରସାମ୍ୟ ହରାଇ ଆତ୍ମହତ୍ୟା କଲେ ।"

- "ହେଲେ କେହି କ'ଣ ଏକଥା ବିଶ୍ୱାସ କରିବ ? କେହି କ'ଣ ବିଶ୍ୱାସ କରିବ ଯେ ଯେଉଁ ରାଜ୍ୟରେ ତିନିଭାଗ ମନ୍ତ୍ରୀ କୋଟିପତି ଅଟନ୍ତି ସେଠି ଜଣେ ସରକାରୀ କିରାଣିର ପେନ୍‌ସନ ପାଇଁ ଅର୍ଥ ନାହିଁ ?" ପ୍ରମୋଦ ଏତକ କହି ନିଜ ପକେଟରେ ମୋଡ଼ା ହୋଇଥିବା ଖବରକାଗଜ ଟୁକୁଡ଼ାଟିକୁ ଦେଖାଇଲେ ।

ନିର୍ବାଚନ କମିଶନଙ୍କ ତଥ୍ୟକୁ ଆଧାର କରି ଉକ୍ତ ପ୍ରମୁଖ ସମ୍ବାଦପତ୍ରରେ କିଛିଦିନ ତଳେ ବାହାରିଥିବା ସମ୍ବାଦଟି ରାଜ୍ୟରେ ବେଶ ଆଲୋଡନ ସୃଷ୍ଟି କରିଥିଲା ଓ ପ୍ରମୋଦ ସେହି ଖବରକାଗଜ ଟୁକୁଡ଼ାଟିକୁ ବାରମ୍ବାର ଦେଖି ସତରେ ଯେମିତି ଖୋଜୁଥିଲେ ତାଙ୍କ ବାପା ଆତ୍ମହତ୍ୟାର କାରଣ ।

- "ମୋତେ ଲାଗୁଥିଲା ମୋର ବାପା ମୋର ସାମ୍ନାରେ ବସିଛନ୍ତି ଆଉ ମୋତେ ସତ ସବୁ କହି ଦେବା ପାଇଁ କହୁଛନ୍ତି ।" ପ୍ରମୋଦ ଏତକ କହିଦେଇ ଜୋରରେ କାନ୍ଦି କାନ୍ଦି ଷ୍ଟେଜର ତଳକୁ ଚାଲିଗଲେ ଓ ମନ୍ତ୍ରୀଙ୍କ ଦ୍ୱାରା ଦିଆଯାଇଥିବା ନାମଫଳକ ତଥା ଶାଲକୁ ଷ୍ଟେଜପାଖ ଟେବୁଲ ଉପରେ ଛାଡ଼ି ଦେଇଗଲେ ।

ହଲ୍ ଭିତରର ଦର୍ଶକଙ୍କ ମଝି ଦେଇ ପ୍ରମୋଦ ବାହାର ଦୁଆର ଆଡ଼େ ଚାଲିଗଲେ । ପଛକୁ ପଛ ଦର୍ଶକମାନେ ମଧ୍ୟ । ନାଥ ଆଜ୍ଞା ବାକି କଳାକାରଙ୍କ ନାମ ଡାକିବା ଆଗରୁ ମନ୍ତ୍ରୀଙ୍କ ଇଙ୍ଗିତରେ ବନ୍ଦ କରିଦେଲେ । ମନ୍ତ୍ରୀ ନିଜେ ମାଇକ୍ ଧରି କହିଲେ- "ଭୁବନେଶ୍ୱର ପହଞ୍ଚିଲେ ପ୍ରମୋଦଙ୍କ ଘଟଣାର ତଦନ୍ତ ନିଶ୍ଚୟ କରିବି ଓ ତାଙ୍କୁ ନ୍ୟାୟ ନିଶ୍ଚୟ ମିଳିବ ।"

ହେଲେ ଦର୍ଶକମାନେ ସେଆଡ଼କୁ ମୁହଁ କରି ଆଉ ଶୁଣିବାକୁ ନଥିଲେ । ମନ୍ତ୍ରୀ ମହୋଦୟ ତୁରନ୍ତ ସ୍ଥାନୀୟ ଜଣେ ଠିକାଦାର ଓ ଶାସକ ଦଳର ସଭାପତିଙ୍କୁ ଇଙ୍ଗିତ ଦେଲେ ନିଜର ଗାଡ଼ିକୁ ପଛପଟ ଗେଟ୍ ପାଖକୁ ଆଣିବା ପାଇଁ । ପରିଷଦର କର୍ମକର୍ତ୍ତାଙ୍କ ପାଖରୁ ବିଦାୟ ନେଇ ମନ୍ତ୍ରୀ ମହୋଦୟ ତ୍ୱରିତ ପଦକ୍ଷେପରେ ଷ୍ଟେଜ ପାଖକୁ ଲାଗିଥିବା ଛୋଟ କବାଟ ଦେଇ ହଲ ବାହାରକୁ ଚାଲିଆସିଲେ ।

ନାଲିବତି ଗାଡ଼ିଟିଏ ସମ୍ମୁଖ ଗେଟ୍ ଦେଇ ଷ୍ଟେଜପାଖ କବାଟ ପାଖକୁ ଆସିଯାଇଥାଏ । ସ୍କୁଲ ପଡ଼ିଆ ହେଲିପ୍ୟାଡରେ ମନ୍ତ୍ରୀଙ୍କୁ ପହଞ୍ଚାଇ ଦେଲେ ତା'ର ଦାୟିତ୍ୱ ସରିଲା । ପ୍ରାଇଭେଟ ଖଣି ମାଲିକଙ୍କ ନିଜସ୍ୱ ହେଲିକପ୍ଟରରେ ମନ୍ତ୍ରୀ ମହାଶୟ ଆସିଥିଲେ ଓ ଏବେ ସେହିଥିରେ ପୁଣି ଫେରିଯିବେ ।

ମନ୍ତ୍ରୀ ମହାଶୟ ସମସ୍ତଙ୍କଠାରୁ ବିଦାୟ ନେଇ ଗାଡ଼ି ଭିତରେ ବସିଲେ ଓ ଗାଡ଼ିର ଆଗେ ଆଗେ କିଛି ପୁଲିସ କର୍ମଚାରୀ ଥିଏଟର ହଲ୍‌କୁ ଲାଗି କମ୍ପାଉଣ୍ଡର ଗେଟ୍ ବାଟେ ମନ୍ତ୍ରୀଙ୍କୁ ବିଦାୟ ଦେବା ପାଇଁ ଚାଲିଲେ । ହେଲେ ଥିଏଟର କମ୍ପାଉଣ୍ଡର ଗେଟ୍ ସାମ୍ନାରେ ପ୍ରମୋଦ ସେହି ଖବର କାଗଜଟିକୁ ଦୁଇ ହାତରେ ଧରି ମନ୍ତ୍ରୀଙ୍କୁ ତା'ର ଉତ୍ତର ପାଇଁ ଯେମିତି ଅପେକ୍ଷା କରିଛି । ଗାଡ଼ିର ସାମ୍ନା ସିଟ୍‌ରେ ବସିଥିବା ମନ୍ତ୍ରୀ ମହାଶୟ ଝରକାର କାଚକୁ ତଳକୁ କରି ଭିତରୁ ଥାଇ ଜବାବ ଦେଲେ- "ପ୍ରମୋଦବାବୁ ! ମୋତେ ସମୟ ଦିଅ । ମୁଁ ତୁରନ୍ତ ଏ ବିଷୟରେ ଏନ୍‌କ୍ୱାରୀ କରିବି । ମୋର ବିଶ୍ୱାସ ତୁମେ ନିଶ୍ଚେ ନ୍ୟାୟ ପାଇବ ।"

ପ୍ରମୋଦ କିନ୍ତୁ ଜବାବ ଦେଲା, 'ଆପଣ ମୋର ବାପାଙ୍କୁ କ'ଣ ଫେରାଇ ଦେଇ ପାରିବେ ?' ମନ୍ତ୍ରୀଙ୍କ ମୁହଁ ଚୁପ୍ ହୋଇଗଲା । ପ୍ରମୋଦ ପୁଣି ଜବାବ ଦେଲା- 'ମୋର ପିତାଙ୍କ ଆତ୍ମହତ୍ୟା ପାଇଁ କ'ଣ ଆପଣ ଆଦୌ ଦାୟୀ ନୁହଁନ୍ତି ?' ମନ୍ତ୍ରୀ କିଛି କହିବା ଆଗରୁ ଜମା ହୋଇଥିବା ଦର୍ଶକମାନେ ମନ୍ତ୍ରୀଙ୍କ ଗାଡ଼ି ଆଡ଼କୁ ମାଡ଼ି ଆସିଲେ । ସାଙ୍ଗେ ସାଙ୍ଗେ ଉପସ୍ଥିତ ପୁଲିସ ମନ୍ତ୍ରୀଙ୍କ ସୁରକ୍ଷା ପାଇଁ ଛୋଟ ବଳୟଟିଏ କରିଦେଲେ । ମାତ୍ର ଏତେ ଲୋକଙ୍କୁ ସେମାନେ ବା କେମିତି କଣ୍ଟ୍ରୋଲ କରିବେ । ଲ'ଆଣ୍ଡ ଅର୍ଡର ସମସ୍ୟା କହି ଜିଲ୍ଲା ଏସ୍‌ପି ଅଧିକ ପୁଲିସ ମଗାଇବା ପାଇଁ ଚିତ୍କାର କଲେ । ନିଜେ ମଧ୍ୟ ନିଜର ସର୍ଭିସ ରିଭଲ୍‌ଭରକୁ ଉପରକୁ କରି ଦୁଇ ରାଉଣ୍ଡ ଗୁଳି ଫୁଟାଇ ଦେଲେ । ହେଲେ ସେତେବେଳକୁ ବେଶ କିଛି ଲୋକ ମନ୍ତ୍ରୀଙ୍କ ଗାଡ଼ିର କାଚକୁ ଭାଙ୍ଗିବା ସହିତ ଗାଡ଼ିକୁ ଓଲଟାଇ ଦେବାରେ ସମର୍ଥ ହୋଇଥିଲେ ।

ଏହାପରେ ତା' ପରଦିନ ସମସ୍ତ ଖବରକାଗଜର ବଡ଼ ବଡ଼ ଅକ୍ଷରରେ ହେଡ୍‌ଲାଇନ ଥିଲା- 'ଏଥର ଜନତାଙ୍କ ରାଗର ଶିକାର ହେଲେ ଖୋଦ୍ ଅର୍ଥମନ୍ତ୍ରୀ ।' ଏହା ସହିତ ଛୋଟ ବଡ଼ ଅକ୍ଷରରେ ଲିଖିତ ଥିଲା- 'ମନ୍ତ୍ରୀଙ୍କୁ ଯଥାଶୀଘ୍ର ଭୁବନେଶ୍ୱରର ପ୍ରାଇଭେଟ୍ ନର୍ସିଂହୋମରେ

ଆଡମିଶନ ।' 'ମୁଖ୍ୟମନ୍ତ୍ରୀ, ଅନ୍ୟ ମନ୍ତ୍ରୀ, ପ୍ରଶାସକ ତଥା ସମର୍ଥକମାନେ ହସପିଟାଲରେ ପହଞ୍ଚିବାରେ ଲାଗିଛନ୍ତି ।' 'ପୁଲିସ ତରଫରୁ କଡ଼ା ସୁରକ୍ଷା ବ୍ୟବସ୍ଥା କରାଯାଇଛି ।'

ଏହା ସହିତ ସ୍ଥାନୀୟ ପ୍ରତିନିଧିଙ୍କ ସୂତ୍ରକୁ ଆଧାର କରି ସେହିସବୁ ଖବରକାଗଜରେ ଲେଖାଯାଇଛି, ପଦମପୁରଠାରେ ଜନସମାବେଶ ବଢ଼ିବାରେ ଲାଗିଛି । ପ୍ରମୋଦଙ୍କ ଘର ଚାରିପଟେ ଅସଂଖ୍ୟ ଛାତ୍ରଛାତ୍ରୀ ସାଧାରଣ ଲୋକ ପହରା ଦେବାରେ ଲାଗିଛନ୍ତି । ବହୁଲୋକ ତାଙ୍କୁ ସମର୍ଥନ ଦେଇ ପଦମପୁରରେ ପହଞ୍ଚୁଛନ୍ତି । ଜିଲ୍ଲାର ବୁଦ୍ଧିଜୀବୀ ମହଲରେ ଗତ ରାତିର ଘଟଣା ବିରାଟ ଆଲୋଡ଼ନ ସୃଷ୍ଟି କରିଛି । ସେଥିରେ ଅଛନ୍ତି ବେଶ କିଛି ଲେଖକ, କବି ଓ ବିଭିନ୍ନ ସଂଗଠନର କର୍ମକର୍ତ୍ତା । ପ୍ରମୋଦଙ୍କୁ ସମର୍ଥନ ଦେବା ସହିତ ଯଦି ସରକାର ଓ ପୁଲିସ କୌଣସି ଆକ୍ରୋଶମୂଳକ ପଦକ୍ଷେପ ନିଅନ୍ତି ତେବେ ଅଞ୍ଚଳବାସୀ ମିଳିତ ଭାବରେ ଏହାର ପ୍ରତିବାଦ କରିବେ ବୋଲି ଘୋଷଣା କରିଥିବା କଥା ମଧ୍ୟ ଉଲ୍ଲେଖ ଅଛି ।



# ଜଣେ ହଜିଯାଇଥିବା ବ୍ୟକ୍ତି ସମ୍ପର୍କରେ

ସେତେବେଳକୁ ରାଜ୍ୟରେ ନୂଆ ମନ୍ତ୍ରିମଣ୍ଡଳ ଗଢ଼ିବା ପ୍ରାଏ ବର୍ଷେ ହୋଇଯାଇଥିବ । ଆଗକୁ ପୁଣି ପଞ୍ଚାୟତ ନିର୍ବାଚନ ଆସୁଥାଏ । ହଠାତ୍ ଦୁଇ ଦିନ ପର୍ଯ୍ୟନ୍ତ ଅଞ୍ଚଳଟା ଗହଳି ହୋଇଗଲା । ରାସ୍ତାରେ ଘନ ଘନ ମାଇକ୍‌ରେ ପ୍ରଚାର ଚାଲିଲା । କେତେବେଳେ ସରକାରୀ ଗାଡ଼ିଟା ମୁଖ୍ୟମନ୍ତ୍ରୀଙ୍କ ଆସିବା କଥା ଘୋଷଣା କରୁଥିଲା ତ ପୁଣି କେତେବେଳେ ରାଜନୀତିଆଙ୍କ ଗାଡ଼ିରେ ଦଳର ପତାକା ଲାଗି ତାଙ୍କ ନେତାଙ୍କ ଆସିବା କଥା କୁହାଯାଉଥିଲା । ରାଜନୀତିଆଙ୍କ ପ୍ରଚାର ଟିକେ ଅଧିକ ଥିଲା । 'ମୁଖ୍ୟମନ୍ତ୍ରୀ ଜିନ୍ଦାବାଦ' ସାଙ୍ଗକୁ 'ଆଦିବାସୀ ଅଞ୍ଚଳରେ ଜମି ପଟ୍ଟା ବଣ୍ଟନ କାର୍ଯ୍ୟକ୍ରମର ଶୁଭାରମ୍ଭ' ଓ 'ମୁଖ୍ୟମନ୍ତ୍ରୀଙ୍କ ନିର୍ବାଚନ ପ୍ରତିଶ୍ରୁତି ରକ୍ଷା' କଥା ସେମାନେ କହୁଥିଲେ । ଭୋଟ ଆଗରୁ ନୂଆକରି ମୋରମ ପଡିଥିବା ରାସ୍ତାରେ ସେତେବେଳକୁ ପୁଣି ଗାତ ହୋଇଯାଇଥିଲା ।

କରଲିପୁର ବିଡ଼ିଓ ଲତ୍ରା ମାଝୀ ପାଖକୁ ପଞ୍ଚାୟତର ପିଅନ ମାଧ୍ୟମରେ ଚିରିକୁଟିଟେ ପଠାଇଦେଇଥାନ୍ତି । ପଞ୍ଚାୟତର ଗ୍ରାମସଭା କେତେକ ସୁରକ୍ଷା କାରଣରୁ ବ୍ଲକ ଅଫିସର ସଭାକକ୍ଷରେ ବସିଥିଲା । ସେଠି ଲତ୍ରା ମାଝୀର ନାମ ଗୁଳା ଉଠିଲା । ଏମିତି ଏମିତି ବ୍ଲକ ସାରାରେ ଆଉ ଦଶଜଣଙ୍କ ନାମ ଠିକ ହୋଇଥିବା କଥା ସେଥର ପିଅନ ଲତ୍ରାର ଘରେ ମାଣ୍ଡିଆ ଜାଉ ପିଉ ପିଉ କହୁଥିଲା । ମୁଖ୍ୟମନ୍ତ୍ରୀଙ୍କ ସଭା ଆଗରୁ ସମସ୍ତଙ୍କୁ ପହଞ୍ଚିବାକୁ ବିଡିଓ କହିଥିବା କଥା ସେ ଶୁଣାଇଦେଇଥିଲା ।

ଚିରିକୁଟିଟି ପାଇଲା ଦିନୁ ଲତ୍ରା ମାଝୀର ଆଖିରେ ନିଦ ନଥିଲା । 'ଭୁବନେଶ୍ୱରର ସରକାର ତେବେ ତା'ର କଥା ଶୁଣିଲେ । ତା' ନହୋଇଥିଲେ ବିଡିଓ କି ଲେଖା ପଠାଇଥାନ୍ତେ ?'...ହେଲେ ସରକାର ତା'କୁ ନୂଆ ଜମି ଦେବେକି ତା'ର ପୁରୁଣା ଜମି ତା'କୁ ଫେରେଇ ଦେବେ ? କେତେଥର ସେ ଗାଁ ଭାଇଙ୍କ ସହିତ, ସମୁଦି ସହିତ, ସ୍ତ୍ରୀ ସହିତ, ନିଜ ସହିତ କଥା ହୋଇଛି । ଲତ୍ରା ମାଝୀର ବାପା ଅଜା ସମୟରେ କୋଡ଼ିଏ କି ବାଇଶି ଏକର ଜମି ଥିଲା । ଧାନ କୋଡିଏ ପୁଟି ସାଙ୍ଗକୁ ମାଣ୍ଡିଆ, ମକା କେତେକ'ଣ ହେଉଥିଲା । ଘର ସାରାର ଲୋକ ଖାଇଲା ପରେବି ବର୍ଷକ ଯାଇ ବଳକା ରହୁଥିବା କଥା

ଲତ୍ରା ପିଲାବେଳେ ଦେଖିଥିଲା । ଅଥଚ ଲତ୍ରା କ୍ରମଶଃ ହେଲା ଜମିହୀନ ସୁଖବାସୀ । ଅଧା ବୟସରେ ସେ ଅନ୍ୟର ଜମି ଧରି ଚାଷ କଲେ ଯାଇ ଘରେ ତା'ର ଚାଉଳ ଫୁଟୁଥିଲା ।

ଲତ୍ରା ଭାବୁଥିଲା 'ରାସ୍ତାପାଖର ତା'ର ସେହି ବଡ଼ କିଆରିଟାକୁ ସରକାର ଫେରାଇ ଦିଅନ୍ତେ କି ?' କଟକର ମିଶ୍ର କରଲିପୁର ସୋସାଇଟିରେ ଚାକିରି କରିଥିଲା । ଲତ୍ରାର ବାପାକୁ ହଜାରେ ଟଙ୍କା ଘରତୋଳା ଋଣ କରେଇଦେବ କହି ଆଗତୁରା ସେହି ଜମିଖଣ୍ଡକ ବନ୍ଧା ରଖେଇ ଦେଇଥିଲା । ଏକଥା ସେହି ପନ୍ଦର କି କୋଡ଼ିଏ ବର୍ଷ ତଳର କଥା । ବାପାକୁ ଭଲ କରି କିସ୍ତି କେତେ ସୁଧ କେତେ ଜଣା ବି ନଥିଲା । ପରେ ସୋସାଇଟିର ଋଣ ଶୁଝି ନପାରିବା ହେତୁ ନିଲାମ ହେଇ ମିଶ୍ରର ନାମକୁ ଚାଲିଗଲା । ଅଥଚ ତା'ର ଅଜା ନିଜେ ସେହି ଜମିକୁ ସଫାକରି, ପଥର ଅଲଗେଇ ବାଡ କରିଥିଲା । ପରେ ବାପା ତା'ର ପାଖ ଝରଣାରୁ ପାଣି କାଟି ମାଣ୍ଡିଆ, ମକା, ଚାଷ କରୁଥିବା ସେ ନିଜେ ଦେଖିଥିଲା । ବାପର କାନ୍ଧକୁ କାନ୍ଧ ଦେଇ ସେ ମାଣ୍ଡିଆ ବୋହିଥିଲା । ପରେ ମିଶ୍ର ସେ ଜମିରେ ଆମ୍ବଗଛ ଲଗେଇ ପ୍ରତିବର୍ଷ କେତେ ଯେ କେତେ ଆମ୍ବ ଗାଡ଼ି ଗାଡ଼ି କରି ସହରକୁ ପଠାଇବା ଲତ୍ରା ଦେଖୁଥିଲା ।

ହଉ ନହେଲା ନାହିଁ ଗାଁ ପଛ ବୁଟକିପଦର ଜମିଟା ସରକାର ଫେରେଇ ଦେଇଥାଆନ୍ତେକି ? ଲତ୍ରା ନିଜ ଗାଁ ପାଖରେ ଯିବା ଆସିବା ବେଳେ ତା' ପୂର୍ବ ପୁରୁଷର ଜମିଟାକୁ ଦେଖିକରି କେତେବେଳେ କେମିତି ଘଡ଼ିଏ ରହିଯାଏ । ଯାଉଥିବା ଲୋକଙ୍କୁ ପାଖକୁ ଡାକି ସେ ଜମିଟା ଯେ ଦିନେ ତା'ର ପୂର୍ବପୁରୁଷର ଥିଲା ସେକଥା କହି ହୁଏ । କେତେଥର ସେ ଗାଁ ପଛ ବୁଟକିପଦର ଜମିକୁ ହଳ କରୁଥିବା ସପନ ଦେଖିଛି । କଳନ୍ତର ନାମରେ ତେଲୁଗୁ ମୂର୍ତ୍ତି ସାହୁକାର ସେହିଟାକୁ କିଛି ବର୍ଷ ହେଲାଣି ଚାଷ କରି ଖାଉଛି । ଜମିଟାକୁ ନିଜ ନାମରେ କରେଇ ଦେଇଛି କି କ'ଣ ଫେରେଇବାର ନାମ ଧରୁନାହିଁ । ଅଥଚ ମୂର୍ତ୍ତି ସାହୁକାର ପୂର୍ବ ଆଡୁ ଆସିଲା ବେଳେ ତା' ପାଖରେ କିଛି ନଥିଲା । ଅଜାକୁ ତା'ର କଥା ଦେଇ ରାସ୍ତା ପାଖ ଜମିରେ ବସା ବାନ୍ଧିଥିଲା । ତେନ୍ତୁଳି, ମହୁଲ, ଅଳସୀ ବେପାର କରି ଗାଁ ଲୋକଙ୍କ ସୁବିଧା ଅସୁବିଧାରେ ଟଙ୍କା ଋଣ ଦେଇଥିଲା । ହେଲେ ଏମିତି ଏମିତି କରି ଗାଁର ବେଶ କିଛି ଲୋକଙ୍କ ଜମିକୁ ସେ ନିଜ ହାତକୁ ନେଇଗଲା ।

ଲତ୍ରା ତା'ର ପୁଅ ଶମ୍ଭୁରୁର ଜ୍ୱର ବେଳେ ସହରକୁ ନେବା ପାଇଁ ମୂର୍ତ୍ତିକୁ ପାଞ୍ଚ ହଜାର ଟଙ୍କା ମାଗିଥିଲା । ସେଥର ଶମ୍ଭୁରୁକୁ ବେଶୀ ଜ୍ୱର ହୋଇଥିଲା । ବଞ୍ଚିବ କି ମରିବ ଜଣା ନଥିଲା । ସହରର ବଡ଼ ଡାକ୍ତରଖାନାରେ ସପ୍ତାହେ ରହି ପୁଅକୁ ଭଲ କରି ଆଣିଥିଲା । ହେଲେ ପାଞ୍ଚ ହଜାର ଟଙ୍କା ବଦଳରେ ବୁଟକିପଦର ଦୋଫସଲୀ ବଡ଼ କିଆରିଟା ଚାଷ କରି ଖାଉଥାଉ ବୋଲି ମୂର୍ତ୍ତି ପାଖରେ ଟିପ ଚିହ୍ନ ଦେଇଥିଲା । ପୁଅ ଆଗ କି ଜମି ଆଗ । ପୁଅକୁ ବଞ୍ଚାଇବ ବୋଲି ଦୁଃଖ ସମୟରେ ମୂର୍ତ୍ତିର ସାହାଯ୍ୟ ନେଲା । ତା'ପରେ ମୂର୍ତ୍ତି ତା'ର ଜମିକୁ ଫେରାଉ ନଥିଲା କି ମୂଳଧନ ଟଙ୍କା ମଧ୍ୟ ନେଉନଥିଲା ।

ଦିନେ ଲତ୍ରା ଟାଙ୍ଗିଆ ଧରି ମୂର୍ତ୍ତିକୁ ଗୋଡ଼ାଇବାରୁ ଦୁଇ ଦିନ ଯାଇ ଥାନା ପାଖ ଘରେ ଲୁଚିଲା । ତା'ପରେ ଥାନାବାବୁକୁ ଧରି ଆସିଥିଲା ଯେ ଥାନାବାବୁ ମଧ୍ୟ ଲତ୍ରାର ଟିପ ଚିହ୍ନ ଦିଆ କାଗଜକୁ ଦେଖି ଓଲଟି ତା'କୁ ବାନ୍ଧିନେବ ବୋଲି ଧମକାଇଲା । "ଏଥର ଫସଲ ଉଠିଗଲେ ମୂର୍ତ୍ତି ଆପେ ଛାଡି ଦେବ ନାହିଁ କି !" -ଥାନାବାବୁ ଗାଁ ଲୋକଙ୍କୁ କହିଦେଇ ଯାଇଥିଲା । ତାପରେବି ମୂର୍ତ୍ତି ଜମି ନଛାଡ଼ିବାରୁ ଗାଁ ଲୋକ ମିଶିକରି ଥାନାକୁ ଯାଇଥିଲେ । ଥାନାବାବୁ ସହିତ ଯୁକ୍ତି ହେଲା । ସେଥର ସେ ଗାଁ ଲୋକଙ୍କୁ ଧମକାଇଲା । "ଥାନାକୁ ଆସିଛ, ବନ୍ଧୁକ ଚୋରି କେସ୍‌ରେ ସମସ୍ତଙ୍କୁ ଜେଲ୍ ପଠାଇଦେବି, ଜାମିନ ପାଇବ ନାହିଁ ।" ସମସ୍ତେ ପୁଣି କାନ ଆଉଁସି ପଳେଇ ଆସିଥିଲେ । ସେତେବେଳକୁ ମୂର୍ତ୍ତି ଆଉ ଆଉ କେତେଜଣଙ୍କର ଜମି ନେଇ ସାରିଲାଣି ।

ଗାଁରେ ତା'ର ଜାତି ଭାଇ ମଦ ପିଇଲେ ଗାଁ ଦାଣ୍ଡରେ ତା'ର ଅଜାକୁ ଗାଳି କରନ୍ତି । "ଶଳା ବୁଢ଼ା ଭଲ ଲୋକି ଦେଖେଇହେଇ ବାହାରିଆଙ୍କୁ ଆଣି ଗାଁରେ ରଖିଲା ଯେ ଗାଁ ଲୋକ ଏବେ ଗୋତି ଖଟୁଛନ୍ତି ।" ଲତ୍ରା ଶୁଣେ, କିଛି କହେ ନାହିଁ । କାହାକୁ ବା ସେ ଦୋଷ ଦେଇଥାନ୍ତା, ନିଜ ଅଜାକୁ ନା ତା'ର ଜାତିଭାଇଙ୍କୁ ?

ବିଡିଓର ଚିରିକୁଟି ଦେଖି ହଳଦିବାଡ଼ିରେ ନୂଆ ଗଜା ବାହାରିଲା ପରି ତା'କୁ ଲାଗୁଥିଲା । ସରକାର ଦେଉଥିବା ଜମିଟାକୁ ଅନ୍ତତଃ ଏଥର ଆଉ କେହି ନେଇ ପାରିବେ ନାହିଁ । ଗାଁ ଭାଇଙ୍କ ଆଗରେ ତା'ର ସମ୍ମାନ ବଢ଼ିଯାଇଥିଲା । ଭିନ୍ନ ଏକ ପରିଚୟ ଲତ୍ରାକୁ ତା'ର ଗାଁ ଭାଇଙ୍କ ଆଗରେ ବଡ଼ କରିଦେଇଥିଲା । ଯେଉଁ ସରକାର ପୁଲିସ, ଅମିନ, ତହସିଲଦାର ହେଇ ତା'ର ଜମି ନେଇଯାଇଥିଲା ଏଥର ସେହି ସରକାର ପୁଣି ତା'କୁ ଜମି ଖଣ୍ଡେ ତ ଦେଲା ! "ହଉ ଯାହା ହେଲା ହେଲା ଜମି ଖଣ୍ଡେତ ମିଳିଲା ।" ଏଥର ଜାତିଭାଇମାନେ ତାକୁ ସମାନରେ ଦେଖିପାରିବେ ନାହିଁ, ନିଶ୍ଚେ ଈର୍ଷା କରିବେ । ସେ କଥା ସେ ମଧ୍ୟ ଧରିନେଇଥିଲା ।

ଏଥର ଲତ୍ରାର ସେହି ଅପେକ୍ଷାର ଦିନଟି ଆସିଲା । ସକାଳୁ ଉଠି ଘର ପାଇଁ କାଠ ଦୁଇ ଖଣ୍ଡ ଟାଙ୍ଗିଆରେ ଚିରିଦେଇ ସଫା ଲୁଗା ସାଙ୍ଗକୁ ସଫା କୁର୍ତ୍ତା ପିନ୍ଧି ଗାମୁଛାରେ ଚିରିକୁଟିକୁ ବାନ୍ଧି କରଲିପୁର ମିଟିଂକୁ ବାହାରିଲା । ଗାଁରୁ କରଲିପୁର ଚାରିକୋଷ ବାଟ । ମିଟିଂ ଜାଗାରେ ବେଶି ଲୋକ ଜୁଟିନଥାନ୍ତି । ମଞ୍ଚକୁ ଲାଗି ବାଉଁଶବାଡ଼ । ଦୂରରୁ ପଞ୍ଚାୟତ ସରପଞ୍ଚ ଲତ୍ରାକୁ ଦେଖି ଡାକି ନେଇ ସେହି ବାଉଁଶବାଡ଼ ଭିତରେ ବସାଇଦେଲା । ଗଲା ଭୋଟ ପରେ ସରପଞ୍ଚ ତା'ଗାଁକୁ କେବେ ଆସିନାହିଁ । ଗାଁ ଲୋକେ ରାସ୍ତା କାମ ପାଇଁ ପଞ୍ଚାୟତକୁ ଲେଖି କରି ଦେଲେ ଯେ ସେ କାମଟାକୁ ବି ସେ ମୂର୍ତ୍ତି ସାହୁକାରକୁ ଦେଇଦେଲା । ଲୋକେ କହିଲେ ବି ସରପଞ୍ଚ ଶୁଣିଲା ନାହିଁ । ଆଜି କିନ୍ତୁ ବେଶ କେତେଥର ଲତ୍ରା ପାଖକୁ ଆସି ଉପରେ ପଡ

କଥା ହୋଇଗଲାଣି । ଲତ୍ରା ଜାଣିଲା ଏଥର ପଞ୍ଚାୟତ ଭୋଟ ପୁଣି ଆସିଗଲାଣି । ବିରକ୍ତିରେ ସେ ମାଟିକୁ ଚାହିଁ ଡାହାଣ ଗୋଡ଼ ବୁଢ଼ା ଆଙ୍ଗୁଠିରେ ଶିର ଟାଣିଲା ।

ଧୀରେ ଧୀରେ ମିଟିଂ ଜାଗାରେ ଲୋକଙ୍କ ଗହଳି ବଢ଼ିଲା । ଟ୍ରକ ଓ ଟ୍ରାକ୍ଟରରେ ଲୋକେ ବୁହା ହୋଇ ଆସୁଥାନ୍ତି । ଏହାପରେ ମୁଖ୍ୟମନ୍ତ୍ରୀଙ୍କ ହେଲିକପ୍ଟର ଆସି ମିଟିଂ ପଛ ପଡ଼ିଆରେ ଓହ୍ଲାଇଲା । ଅଞ୍ଚଳଟା ପୂରା ପୁଲିସ ଯବାନଙ୍କ ଦ୍ୱାରା ଭରିଯାଇଥାଏ । ମିଟିଂ ପାଖରେ ମୁଖ୍ୟମନ୍ତ୍ରୀ ପହଞ୍ଚିଲାବେଳୁ ଚାରିଆଡୁ ଜିନ୍ଦାବାଦ ସ୍ଲୋଗାନ ଶୁଣାଯାଉଥିଲା । ସମସ୍ତଙ୍କୁ ହାତ ଯୋଡ଼ି ନମସ୍କାର କରି ସେ ସବୁଠୁ ଉଚ୍ଚ ଚୌକିରେ ବସିଗଲେ । ମିଟିଂ ଆରମ୍ଭ ହେଲା । "ଜମିହୀନ ଆଦିବାସୀ ପରିବାରକୁ ଜମିଦାନ, ସରକାରୀ କାର୍ଯ୍ୟକ୍ରମର ଶୁଭାରମ୍ଭ ଅତିଶୀଘ୍ର ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ହେବାକୁ ଯାଉଛି । କରଲିପୁର ବ୍ଲକ ଏକ ଆଦିବାସୀ ବହୁଳ ପଛୁଆ ବ୍ଲକ ଭାବରେ ଜଣାଶୁଣା । ମାନନୀୟ ମୁଖ୍ୟମନ୍ତ୍ରୀ ଜମି ପଟ୍ଟା ବଣ୍ଟନର ଏହି ରାଜ୍ୟ ବ୍ୟାପୀ କାର୍ଯ୍ୟକ୍ରମର ଶୁଭାରମ୍ଭ ଆଜି ଏହିଠାରୁ କରିବେ ।" ଏକଥା ସଭାରେ ଉପସ୍ଥିତ ଥିବା ଜିଲ୍ଲାର ଜିଲ୍ଲାପାଳ ଘୋଷଣା କଲେ ।

ଏହାପରେ ଜଣକ ପରେ ଜଣକ ନାମ ଡକାହୋଇଥିଲା । ଲତ୍ରା ନାମ ଡକା ହେଲା କ୍ଷଣି ସେ ଡର ଡର ପାଦରେ ମଞ୍ଚ ଆଡ଼କୁ ମୁହାଁଇଲା । ମନରେ ଥିଲା ବହୁତ ଆଶା ଯଦିଓ ଏକ ଅଜଣା ଭୟ ତା'କୁ ପଛରୁ ଟାଣି ଧରୁଥିଲା । ପାହାଚରେ ଉଠିଲା ବେଳକୁ ପୁଲିସ ତା'ର ଦେହ, ହାତ, ଗୋଡ଼, କୁର୍ତ୍ତା, ପକେଟ ସବୁ ତନଖି କରିନେଇଥିଲା । ଲତ୍ରା ମାଝୀ ମୁଖ୍ୟମନ୍ତ୍ରୀଙ୍କ ଆଗରେ ଠିଆ ହେଲା ବେଳକୁ କେତେ ଫଟୋ ଉଠିଲା ।

ଗଲା ତିନି ଦିନ ହେଲାଣି ଏଥିପାଇଁ ସେ କେତେ ଡରିନାହିଁ । ରାତିରେ ସ୍ୱପ୍ନ ଦେଖେ, ମଞ୍ଚକୁ ସେ ଉଠି ପାରୁନାହିଁ । ସେଥିରେ ତା'ର ନିଦ ଭାଙ୍ଗିଯାଏ । ନିଦ ଭାଙ୍ଗିଗଲେ ଢକ ଢକ କରି ପାଣି ପିଇଦିଏ । ଅଥଚ ଏଇଟା ତା'ର ଅତି ପରିଚିତ ହାଟ ପଡ଼ିଆ । ମୁଖ୍ୟମନ୍ତ୍ରୀଙ୍କ ଠାରୁ ପଟ୍ଟା ନେଇ ଫେରିଲା ବେଳେ ସେ ଗାଁ ଲୋକଙ୍କୁ ଖୋଜିଲା । ଖୋଜିକରି ସେ ସେହିମାନଙ୍କ ପାଖରେ ଆସି ବସିପଡ଼ିଲା ।

ସେ ଫେରିଲା ବେଳକୁ ମୁଖ୍ୟମନ୍ତ୍ରୀ ଜମି ପଟ୍ଟା ବାଣ୍ଟିବା ଶୀଘ୍ର ସାରି ନିଜର ଭାଷଣ ଆରମ୍ଭ କରି ଦେଇଥାନ୍ତି । "ଆମ ରାଜ୍ୟରୁ ଗରିବୀ ହଟାଇବା ପାଇଁ ଆମେ ନିର୍ବାଚନ ସମୟରେ ଜମିହୀନଙ୍କୁ ଜମି ପଟ୍ଟା ଦେବା କଥା ଘୋଷଣା କରିଥିଲୁ । ଏବେ ସମଗ୍ର ରାଜ୍ୟରେ ଏକ ଲକ୍ଷ ପରିବାରକୁ ଜମିପଟ୍ଟା ଦେବା କଥା ମୋର ସରକାର ନିଷ୍ପତ୍ତି ନେଇଛି ।" ଲୋକେ ତାଳିମାରି ନିଜର ଖୁସି ଜଣାଉଥାନ୍ତି । ଲତ୍ରା ଗାଁ ଲୋକଙ୍କ ମେଳିକୁ ଆସି ସରକାରୀ କାଗଜଟାକୁ ପୁତୁରା ଜଗଦୀଶର ହାତକୁ ବଢ଼ାଇ ଦେଲା । ଜଗଦୀଶ ମାଟ୍ରିକ୍ ପାଶ କରି ଗାଁରେ ଗୋଟେ କିରାଣୀ ଦୋକାନ ଖୋଲିଛି । ଗାଁ ଲୋକଙ୍କ ଲେଖା ପଢ଼ା କମ, ସିଏ ଲୋକଙ୍କ ପାଇଁ ସେସବୁ କାମ କରିଦିଏ । "ଦାଦା, ଏଥିରେ ତ ଆମ ମୌଜାର ନାମ, ଆମ ଗାଁର ନାମ, ତୁମ ନାମ ଲେଖା

ଅଛି । ହେଲେ କେଉଁ ଜମିଟା ଦେଲେ ତା'ର ଜାଗା ନମ୍ବର କି ଖାତା ନମ୍ବର ତ ଆଦୌ ଲେଖା ନାହିଁ । ଜଗଦୀଶର କଥା ଶୁଣି ପାଖ ପାଞ୍ଚ ଲୋକ କାଗଜକୁ ଦେଖିବାରେ ଲାଗିଗଲେ । ଲତ୍ରା ପୁଣି ଥରେ ଭଲ କରି ଦେଖିବା ପାଇଁ ଜଗଦୀଶକୁ ଅନୁରୋଧ କଲା । "ଯାଃ, ଲେଖା ତ ହୋଇନାହିଁ ।" ଗାଁ ଭାଇଟେ ଜୋରରେ ଥଟ୍ଟା କରିଦେଲା । ଲତ୍ରାର ମୁଣ୍ଡ ଝାଇଁ ମାରିଗଲା । ତା'ର ଜମି ଖଣ୍ଡିଏ ପାଇବାର ଆଶା କ'ଣ ଏଇଠି ସରିଯିବ ? ଗାଁକୁ ଅମିନ ଟଙ୍କା ବାନ୍ଧିଲେ ବି ଆସିବ ନାହିଁ । ସରପଞ୍ଚ ତ କେବେ ଦେଖା ଦିଏ ନାହିଁ । ସେ କେମିତି ଜାଣିବ କେଉଁ ଜମିଟା ତା'ର ? ସେ ସେହି କାଗଜଟିକୁ ଧରି ମଞ୍ଚ ପାଖକୁ ଦୌଡ଼ିଯିବ ବୋଲି ଉଠିଲା ।

ଲତ୍ରା ଆଗକୁ ମାଡ଼ିଗଲା ବେଳକୁ ପୁଲିସବାଲେ ଏଥର ଜଗି ଦେଲେ । ମୁଖ୍ୟମନ୍ତ୍ରୀ ମଞ୍ଚ ଛାଡ଼ି ହେଲିକପ୍ଟର ପାଖକୁ ଯାଉଥାନ୍ତି । ପୁଲିସକୁ ନେହୁରା ହୋଇ ସେ ଆଗକୁ ଯିବାକୁ ଉଦ୍ୟମ କଲା । ପାଟିରୁ ତା'ର କଥା ବାହାରୁ ନାହିଁ । କାଗଜଟିକୁ ଖାଲି ସେ ପୁଲିସବାଲାଙ୍କୁ ଦେଖାଉଥାଏ । ମୁଖ୍ୟମନ୍ତ୍ରୀ ହାତ ହଲାଇ ସମସ୍ତଙ୍କ ଠାରୁ ବିଦାୟ ନେଉଥାନ୍ତି । ଏହା ପରେ ସେ ହେଲିକପ୍ଟର ଭିତରକୁ ପଶିଗଲେ । ତା'ର ପଙ୍ଖାଗୁଡିକ ବୁଲିବାକୁ ଲାଗିଲା । ତଥାପି ଲତ୍ରା ସେ ଆଡ଼କୁ ଦଉଡ଼ି ଯିବାକୁ ଚେଷ୍ଟା କଲା ବେଳକୁ କେହି ଜଣେ ତାର କୁର୍ତ୍ତାକୁ ଧରି ଜୋରରେ ପଛକୁ ଟାଣି ଦେଲା । ନୂଆ କୁର୍ତ୍ତାଟା ସେଥିରେ ଫଡ଼ କରି ଚିରିଗଲା ।

ଲତ୍ରା କାଗଜଟି ଧରି ଉପରକୁ ଚାହୁଁଥିଲା । ମେଞ୍ଚାଏ ଧୂଳି ତା'ର ଦେହରେ ଆସି ବାଜିଲା । ସିଆଡ଼େ ଜିଲ୍ଲାପାଳଙ୍କ ଗାଡ଼ି ମଧ୍ୟ ଧୂଳି ଉଡ଼ାଇ ଚାଲିଗଲାଣି । ସେହି ପବନ ଭିତରେ ତା'ର ହାତରୁ ଚିରିକୁଟିଟି ଉଡ଼ିଗଲା । ସେ ଆଡ଼କୁ କିନ୍ତୁ ତାର ଗୋଡ଼ ଗଲା ନାହିଁ । ଧୀରେ ଧୀରେ ସେ ଗାଁକୁ ଯାଇଥିବା ରାସ୍ତାର ବିପରୀତ ଦିଗରେ ପାଦ ବଢ଼ାଇଲା । ହେଲିକପ୍ଟରର ବେଗ ସହିତ ତାଳ ଦେଇ ସେ ମଧ୍ୟ କେଉଁ ଆଡେ ହଜିଗଲା । ତା'ପରଠାରୁ ଲତ୍ରା ମାଝୀକୁ ଗାଁରେ ଆଉ କେହି ଦେଖିନାହାନ୍ତି ।

ଲତ୍ରା ନିଖୋଜ ହେବାର କିଛି ମାସ ପରେ ଦିନେ ସକାଳୁ ପୁଲିସ ତା'ର ଗାଁକୁ ଘେରାଓ କଲା । ତା'ର ଘରେ ପଶି ଜିନିଷ ସବୁ ଫିଙ୍ଗା ଫୋପଡ଼ା କଲା । ଗଲା ବେଳେ ତା'ର ପିନ୍ଧା ଲୁଗା ଓ ଭୋଟ ପରିଚୟ ପତ୍ର ଧରି ପଳାଇଗଲା ।



# ଗୁଣ୍ଡୁଚି ମୂଷା ଉପରେ ରାମଙ୍କ ପ୍ରହାର

ପବନର ବେଗ ଧୀରେ ଧୀରେ ବଢ଼ିବାରେ ଲାଗିଥାଏ । ରାସ୍ତା ସବୁ କେତେବେଳୁ ଫାଙ୍କା ହୋଇଗଲାଣି । ସେତେବେଳକୁ ପ୍ରଚଣ୍ଡ ଧୂଳି ଉଡି ଆକାଶକୁ ମାଟିଆ କରିଦେଲାଣି । ପବନର ବଢୁଥିବା ବେଗ ଦେଖି କମ୍ପାନୀର ବୃହତ ହୋର୍ଡ଼ିଂଟି ଭୟରେ ଥରହର । ଦୂରରେ ଥିବା 'ପୋଲିଓ ଟିକାକରଣ ପାଇଁ ଜନସାଧାରଣଙ୍କୁ ଆହ୍ୱାନ' ଦେଉଥିବା ସରକାରୀ ବ୍ୟାନରଟିର ଗୋଟେ ପାଖ କେତେ ବେଳୁ ଛିଣ୍ଡି ସାରିଲାଣି । ହୁଏତ ଆଉ କିଛି ସମୟ ପରେ ସେହି ବ୍ୟାନରଟି ପୂରା ଛିଣ୍ଡି ଯାଇ କୌଣସି ଏକ କୋଠାରେ ବା ବିଦ୍ୟୁତ ଖୁଣ୍ଟିର ଦେହରେ ଢାପ୍ କରି ମାଡ଼ ହେବ ଓ ସେହିଠାରେ ସମାଧି ନେଇଯିବ । ଏହାକୁ ଦେଇ ନିଜର ମୃତ୍ୟୁ ଯେ ପାଖେଇ ଆସିଲାଣି ଏଇ କଥା ଭାବି ଭାବି ନିଜ ଭିତରେ ନିଜେ ସମ୍ପୂର୍ଣ୍ଣ ଝାଳେଇ ସାରିଲାଣି କମ୍ପାନୀର ହୋର୍ଡ଼ିଂଟି ।

ଏହି ଝଡ ଆସିବାର କିଛି ସମୟ ଆଗ ପର୍ଯ୍ୟନ୍ତ କମ୍ପାନୀର ବିଜ୍ଞାପନ ହୋର୍ଡ଼ିଂଟି କିନ୍ତୁ ରାସ୍ତାରେ ଯାଉଥିବା ପଥିକଟିଏ ଯେମିତି ଅଧିକରୁ ଅଧିକ ଦୂରରୁ ତାକୁ ପଢ଼ିପାରିବ ସେଥିପାଇଁ ନିଜକୁ ଆହୁରି ଉଜ୍ଜ୍ୱଳ ଓ ପ୍ରସାରିତ କରିଦେଉଥିଲା । 'ଆଇଏ ଦେଖିଏ ଔର ଲୁଟିଏ', 'ମାନନୀୟ ଶ୍ରୀଯୁକ୍ତ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ବହୁ ତଳ ବିଶିଷ୍ଟ ସପିଙ୍ଗମଲ୍‌ର ଶୁଭ ଉଦ୍‌ଘାଟନ', 'ଭାରତ ଆଗେଇ ଚାଲୁ ଏୟାହିଁ ଆମର ପ୍ରାର୍ଥନା' ଓ 'ଏପରି ସପିଙ୍ଗମଲ୍ ସମଗ୍ର ପୂର୍ବାଞ୍ଚଳରେ ପ୍ରଥମ' ଏକ ଇଉରୋପୀୟ କମ୍ପାନୀର ଏପରି ସ୍ଲୋଗାନ ସାଙ୍ଗକୁ 'ଉଦ୍‌ଘାଟନ ଦିନ ସମସ୍ତ କିଣିବା ଉପରେ ୨୦% ରିହାତି' ଘୋଷଣା କରୁଥିଲା । ପାଞ୍ଚ ମିଟର ଓସାର ଓ ଦଶ ମିଟର ଦୀର୍ଘର ବିରାଟ ହୋର୍ଡ଼ିଂର ଏହି ବିଷୟବସ୍ତୁ ପ୍ରସଙ୍ଗରେ ରାସ୍ତାରେ ଯାଉଥିବା ଦେଖଣାହାରୀଙ୍କ ଭିତରେ ଯେତିକି ଆଲୋଚନା ହେଉଥିଲା ହୋର୍ଡ଼ିଂଟି ନିଜ ଭିତରେ ନିଜେ ଲଟେରୀ ଜିତିଥିବା ବ୍ୟକ୍ତି ପରି ସେତିକି କୁରୁଳି ଉଠୁଥିଲା । ହେଲେ ତା' ନିକଟରେ ରାସ୍ତାର ଠିକ ସେହି ବାମ ପାଖରେ ଅବସ୍ଥିତ ବହୁ ପୁରାତନ ବିରାଟ ଅଶ୍ୱତ୍ଥ ଗଛଟି ଯେ ତାକୁ ଆଢୁଆଳ କରିଦେଉଛି ସେହି କଥା ଭାବି ନିଜ ଭିତରେ ବିରକ୍ତ ମଧ୍ୟ ହେଉଥିଲା ।

ହେଲେ ଝଡ଼ ପବନର ବଢୁଥିବା ବେଗ ଯେମିତି ହୋର୍ଡ଼ିଂଟିକୁ ମୃତ୍ୟୁ ପାଖକୁ ଠେଲି ନେଉଥିଲା । ହୋର୍ଡ଼ିଂଟି ଦେଖିଲା ପବନରେ କୌଣସି ଘରର ଛୋଟ ଟିଣ ଖଣ୍ଡେ ବହୁଦୂରରୁ

ଉଡ଼ି ଆସୁଛି । ହୋର୍ଡ଼ିଂର ହାଲୁକା ଶୁଖିଗଲା । ହେଇ ବାଜିବ... ବାଜିବ... ଧଡ଼୍ କରି ଗଛ ଡାଳରେ ଟିଣଟି ବାଜି ତଳେ ବିରାଟ ଶବ୍ଦକରି ପଡ଼ିଗଲା । ଏଥର ପାଇଁ ହୋର୍ଡିଂଟି ବଞ୍ଚିଗଲା ।

ବିକାଶମୁଖୀ ସହରର ପ୍ରବେଶଦ୍ୱାରରେ ଠିଆ ହୋଇ ସ୍ୱାଗତ ମୁଦ୍ରାରେ ଅଭିନନ୍ଦନ ଜଣାଉଥିବା ଏହି ବିଜ୍ଞାପନ ହୋର୍ଡିଂଟି ସେଦିନ ପ୍ରକୃତିର ଭୀଷଣାକାୟ ରୂପରେ ଭୟଭୀତ ଗର୍ଭିଣୀ ହରିଣୀ ପରି ନିକଟରେ ଦୃଢ଼ ଭାବରେ ଦଣ୍ଡାୟମାନ ସେହି ଅଶ୍ୱତ୍ଥ ବୃକ୍ଷଟିକୁ ଅନୁରୋଧ କଲା,- "ଭାଇ ତୁମର ଡାଳକୁ ମୋ ଆଡ଼କୁ ଆହୁରି ଟିକିଏ ପ୍ରସାରିତ କରିଦିଅନ୍ତନି ? ମୁଁ ତୁମର ଉପକାର ଜୀବନରେ କେବେ ଭୁଲିପାରିବି ନାହିଁ ।"

ଅଥଚ ବୃକ୍ଷଟି ଥିଲା ନୀରବ । ପିଲାବେଳୁ ଏପରି ଝଡ଼ସେ ଅନେକ ଦେଖିଛି, ଭୋଗିଛି ମଧ୍ୟ । ସେଥିରୁ ବଞ୍ଚିବା ପାଇଁ ପ୍ରତିଥର ନିଜର ଚେରକୁ ଆହୁରି ଗଭୀରକୁ ନେଇଛି ଓ ନିଜକୁ ଆହୁରି ବ୍ୟାପ୍ତ କରିଛି । ସେହି ଭିତରେ ସେ ଦ୍ରୁମ ପାଲଟିଯାଇଛି । ହୋର୍ଡିଂଟିର ଦୁର୍ବଳ ସ୍ଥିତି ଦେଖି ନିଜ ଭିତରେ ଦୟା ଆସୁଥିଲା । ମାତ୍ର କିଛି ମଣିଷ ଆସି ଯେତେବେଳେଠାରୁ ପାଖରେ ଛୋଟ ଛୋଟ ଗଛ ବୁଦାକୁ ସଫା କରି ଏତେ ବଡ ହୋର୍ଡିଂଟି ଲଗାଇଦେଲେ ସେତେବେଳଠାରୁ ସେ ନିଜ ଭିତରେ କଷ୍ଟ ଅନୁଭବ କରିଚାଲିଛି । ଉଭୟେ ଏତେ ପାଖା ପାଖି ଥାଇ ମଧ୍ୟ ଠିକ୍ ଆପାର୍ଟମେଣ୍ଟର ଦୁଇ ପଡ଼ୋଶୀ 'ପରି କେବେବି ଭଲରେ ଦୁଇ ପଦ କଥା ହୋଇନାହାନ୍ତି ।

ବୃକ୍ଷର ନୀରବତା ହୋର୍ଡିଂଟିର ବ୍ୟସ୍ତତାକୁ ବଢ଼ାଇଦେଲା । - "ଭାଇ, ଆପଣ ମୋତେ ବଞ୍ଚାନ୍ତୁ । ସତ କହୁଛି ଆପଣ ନଥିଲେ ଆଜି ଏଠି ମୁଁ ନଥାନ୍ତି ।"

ବୃକ୍ଷ ସେମିତି ଦୋହଲୁଥିଲା ପବନର ସୁଅରେ । ପୁଣି ଦଲକାଏ ପବନ ହୋର୍ଡିଂ ଦେହରେ ବାଜିବା ଆଗରୁ ବୃକ୍ଷର ଦେହରେ ବାଜି ଥମିଗଲା । ଏଥର ସାହାସ ପାଇଲା- "ବଡ଼ଭାଇ, ବିଶ୍ୱାସ କରନ୍ତୁ । ମୋର କୌଣସି ଭୁଲ ନାହିଁ । ମୋର ମାଲିକ ମୋତେ ଏଠାକୁ ନେଇ ଆସିଛନ୍ତି ସହରବାସୀଙ୍କ ସାହାଯ୍ୟ ପାଇଁ ।" ବୃକ୍ଷଟି ଏଥର ହୋର୍ଡ଼ିଂର କଥା ଶୁଣିବାକୁ ଚେଷ୍ଟା କଥା । ଏଥିରେ ହୋର୍ଡ଼ିଂ ସାହସ ପାଇ ଜୋରରେ କହିଲା, "ଦାଦା, ସହରବାସୀଙ୍କର ଉପକାର ପାଇଁ ମୋତେ ଏଠି ବସେଇ ଦେଇଛନ୍ତି ।"

ଅଶ୍ୱତ୍ଥ ବୃକ୍ଷଟି କିନ୍ତୁ କିଛି ସମୟ ପାଇଁ ଅନ୍ୟମନସ୍କ ହୋଇଗଲା । ସେ ଦେଖିଛି ଏହି ବସିଥିବା ସହରର ଆଦ୍ୟଆକାଶ, ପୁଣି ଏହାର ସଂପ୍ରସାରଣ । ତା'ରି ଆଗରେ ତା'ର ଛୁଆ, ନାତିମାନଙ୍କୁ ଗୋଟି ଗୋଟି କରି ହତ୍ୟା କରାଯିବା ଓ ସେହି ସ୍ଥାନରେ ରାସ୍ତା, ଅଫିସ, ଅଟ୍ଟାଳିକା ଓ ଫ୍ୟାକ୍ଟରୀ ବସିବା, ସେ ସବୁ ଦେଖିଛି । ସେ କେବେ ଏହାକୁ ବରଦାସ୍ତ କରିପାରିନାହିଁ । ସହର ବଢ଼ିଛି ଓ ତା'ର ପରିବାର ଗୋଟେ ପରେ ଗୋଟେ ଛିଡ଼ିଚାଲିଛନ୍ତି । କୁରାଢ଼ି ଚୋଟରେ ଗୋଟେ ପରେ ଗୋଟେ ତାର ପୂର୍ବଜମାନେ ଟଳିପଡିବାର ଦୁଃଖ, ତା' ଗଛ ଛାଇରେ କେବେ କେମିତି ଆଶ୍ରା ନେଇଥିବା ବ୍ୟାଘ୍ର, ଓ ହରିଣର ଗୁଳିବିଦ୍ଧ ସମ୍ବର ଶରୀର, ସେମାନଙ୍କ ଲୋତକଭରା ଆଖି- ସବୁ ତାକୁ ଏକାଠି ବ୍ୟସ୍ତ କରିଦେଉଥିଲା । ନିଜ

ଭିତରର ହତାଶବୋଧରୁ ଫେରି ଆସି ବୃକ୍ଷଟି ଏଥର ଏକ ଦୀର୍ଘନିଃଶ୍ୱାସ ନେଇ ହୋର୍ଡିଂ ଉଦ୍ଦେଶ୍ୟରେ କହି ଉଠିଲା- "ଅନ୍ୟର ସୁଖ ଦୁଃଖରେ ସାମିଲ ହୋଇପାରିଲେ ମୁଁ ନିଜକୁ ଧନ୍ୟ ମନେକରିବି । ତୁମେ ଚିନ୍ତା କରନି ବନ୍ଧୁ । ଏ ପବନ ତୁମକୁ ହଟାଇ ପାରିବ ନାହିଁ ।" ଏହା ପରେ ନିଜର ପୂର୍ବଜଙ୍କୁ ପ୍ରଣାମ କରି ସେମାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କଲା, "ହେ ପୂର୍ବଜମାନେ ! ସହିଷ୍ଣୁ ହେବା ଆମର ଗୁଣ । ମୋତେ ଅତୀତର ସେହି ଦୁଃଖଦ ଘଟଣାଗୁଡିକୁ ହଜମ କରିନେବା ପାଇଁ, ଶକ୍ତି ଦିଅନ୍ତୁ ।"

ଅଶ୍ୱତ୍ଥ ବୃକ୍ଷ ନିଜର ଡାଳମାନଙ୍କୁ ନେଇ ହୋର୍ଡିଂ ସାମନାରେ ଆହୁରି ଶକ୍ତ କରି ଠିଆ ହେଲା ଯେମିତି ପବନର ମାଡ଼ ସେ ନିଜେ ସମ୍ଭାଳିନିଏ । ଏଥର ହୋର୍ଡିଂ ସେହି ଝଡ଼ରୁ ରକ୍ଷା ପାଇଗଲା । ହେଲେ ବୃକ୍ଷଟି ଏଥିରେ ଅଧିକ କ୍ଷତବିକ୍ଷତ ହୋଇଗଲା । ସେଥିରେ ସେ ନିଜର ଅଜସ୍ର ଡାଳ ଓ ପତ୍ର ହରାଇଲା ।

ପବନ ପୁରା ଥମିଗଲା ପରେ ହୋର୍ଡିଂ ନିଜର କୃତଜ୍ଞତା ଜଣାଇଲାବେଳେ ଆହତ ବୃକ୍ଷ ବର୍ଷାର ପାଣି ଢୋକେ ପିଇ ଉତ୍ତର ଦେଲା,- "ପ୍ରକୃତିର ଏୟା ହିଁ ନିୟମ । କାହିଁ କେଉଁ ଯୁଗରୁ ମୋର ଏ ଦାୟିତ୍ୱ ମୁଁ କରି ଚାଲିଛି । ମୁଁ ମେଲି ହୋଇଛି ମଣିଷଙ୍କୁ, ପକ୍ଷୀଙ୍କୁ, ପଶୁଙ୍କୁ, ମୂଷାଙ୍କୁ, ସରୀସୃପ ସମସ୍ତଙ୍କୁ ଆଶ୍ରୟ ଦେବା ପାଇଁ ।"

ପରଦିନ କିଛି ଲୋକ ଆସି ବିରାଟ ହୋର୍ଡିଂ ଚାରିପାଖେ ଲୁହାର ଫ୍ରେମ ଦେଇ ଆହୁରି ଶକ୍ତ କରିଦେଲେ । ଦୁଇଟି ଗୋଡ ମଝିରେ ଆଉ ଦୁଇଟି ଗୋଡ଼ ଲଗେଇଦେଲେ । ଏଥର ହୋର୍ଡିଂଟି ଆହୁରି ଦୃଢ଼ ହୋଇଗଲା । ଗଲାବେଳେ ସେମାନେ ଅଶ୍ୱତ୍ଥ ବୃକ୍ଷର କିଛି ଡାଳକୁ ମଧ୍ୟ କାଟିଦେଇଗଲେ ।

ପ୍ରଧାନମନ୍ତ୍ରୀଙ୍କ ଆସିବାର ଦିନ ପାଖେଇ ଆସିବା ସହିତ ହୋର୍ଡିଂର ବିଷୟବସ୍ତୁ ସହରବାସୀଙ୍କ ପାଇଁ ଚର୍ଚ୍ଚାର ବିନ୍ଦୁ ପାଲଟିଥିଲା । ଲୋକେ ହୋର୍ଡ଼ିଂ ପାଖରେ ଠିଆ ହୋଇ ନିଜ ଭିତରେ କଥା ହେଲା ବେଳେ ବିଜ୍ଞାପନ ହୋର୍ଡିଂଟି ସେମାନଙ୍କୁ ଆକର୍ଷିତ କରିପାରୁଥିବାରୁ ନିଜ ଭିତରେ ନିଜେ ଉଲ୍ଲସିତ ହେଉଥିଲା । ଗୋଟେ ପଟେ ଅଶ୍ୱତ୍ଥ ବୃକ୍ଷଟି ଅଧିକରୁ ଅଧିକ ହୋର୍ଡିଂ ପ୍ରତି ଦୟା ପରବଶ ହୋଇ ତାକୁ ସ୍ଥାୟୀ ସୁରକ୍ଷା ଦେବା ଆଶାରେ ରାସ୍ତା ପଟକୁ ଥିବା ନିଜର ଶାଖାକୁ ଅଧିକ ପ୍ରସାରିତ କରୁଥିଲା ଓ ତାହା ତା' ପାଇଁ ଥିଲା ପ୍ରକୃତିର ନିୟମ – ଏକ ସ୍ୱାଭାବିକ ଗୁଣ । ଅନ୍ୟପଟରେ ହୋର୍ଡ଼ିଂଟି ବୃକ୍ଷ ଉପରେ ବିରକ୍ତ ହେଉଥିଲା ଓ ତାହାଥିଲା ତା' ପାଇଁ ବିକାଶର ସ୍ୱପ୍ନ ଦେଖୁଥିବା ମଣିଷର ସହଜାତ ଗୁଣ- ବିଦ୍ୱେଷ ।

ନିର୍ବାଚିତ ପ୍ରତିନିଧି ଭୋଟରଙ୍କୁ ଜଣାଇଥିବା କୃତଜ୍ଞତାକୁ ପ୍ରଥମେ ଭୁଲି ନିଜକୁ ସର୍ବଶକ୍ତିମାନ ମନେକଲା ଭଳି ବୃକ୍ଷ ହେତୁ ସେଥର ବଞ୍ଚିଯାଇଥିବା ହୋର୍ଡିଂଟି ବର୍ତ୍ତମାନର ମୁଖ୍ୟ ସ୍ରୋତ ବୋଲି ନିଜକୁ ନିଜେ ଦାବୀ କରୁଥିଲା ।

ପ୍ରଧାନମନ୍ତ୍ରୀଙ୍କ ଉଦ୍‌ଘାଟନ କାର୍ଯ୍ୟକ୍ରମର ଦୁଇ ଦିନ ପୂର୍ବର କଥା । ସକାଳୁ ସକାଳୁ ବେଶ କିଛି ହଳଦିଆ ବସ୍ତ୍ରଧାରୀ ବ୍ୟକ୍ତି କାନ୍ଧରେ ଗେରୁଆ ଉତ୍ତରୀୟ ପକାଇ ଅଶ୍ୱତ୍ଥ ବୃକ୍ଷର ପାଖରେ ପହଞ୍ଚି ଗଲେ ଓ ସମ୍ମିଳିତ ସ୍ୱରରେ ଗାନ କରିବା ଆରମ୍ଭ କଲେ,- "ମଙ୍ଗଳ ଭବନ ଅମଙ୍ଗଳହାରି, ଦ୍ରବହସୁ ଦଶରଥ ଅଚିର ବିହାରୀ ।" ସେମାନେ ଏହାର ପଦ ପରେ ପଦ ଗାଉଥିଲେ । ଠିକ୍ ଅଳ୍ପ ସମୟ ପରେ ସହର ପଟରୁ ଛକର ଡାହାଣ ପଟକୁ ଅତିକ୍ରମ କରି ଚାରିଦାନ୍ତିଆ ବିରାଟକାୟ ଏକ ଡ୍ରୋଜର ନିଜର ଚେହେରା ଦେଖାଇଲା । ମେସିନଟି ବିରାଟକାୟ ଶବ୍ଦକରି ଧୀରେ ଧୀରେ ହୋଡିଙ୍ଗ୍‌ର ନିକଟବର୍ତ୍ତୀ ହେଲା । ବୃକ୍ଷଟିର ସେହି ମେସିନକୁ ଦେଖିବା ମାତ୍ରେ ଅତୀତର ସେହି ଧ୍ୱଂସକାରୀ ଚିତ୍ରଗୁଡ଼ିକ ମନେପଡ଼ିଗଲା । ଏଥର ମଧ୍ୟ ବୃକ୍ଷ ନିଜ ଭିତରେ ଭୟଭୀତ ହୋଇଗଲା । ହୋଡିଙ୍ଗଟି ଅଥଚ ଥିଲା ବେଶ ଖୁସ, ତା' ଭିତରେ ଥିଲା ବିଶ୍ୱବିଜୟୀର ହସ । ହୋଡିଙ୍ଗଟି ପୂର୍ବ ଦିନର ସନ୍ଧ୍ୟାର କଥାକୁ ମନେ ପକାଇ ନିଜ ଭିତରେ କୁରୁଳୁଥିଲା ।

ପୂର୍ବଦିନ ସନ୍ଧ୍ୟାରେ ହୋଡିଙ୍ଗ ଲାଗିଥିବା କମ୍ପାନୀ ଅଧିକାରୀ ଜଣକ ସରକାରୀ ଅଧିକାରୀଙ୍କ ସହିତ ସେହି ସ୍ଥାନକୁ ଆସିଥିଲେ । କମ୍ପାନୀ ଅଧିକାରୀ ଜଣକ ସରକାରୀ ଅଧିକାରୀଙ୍କୁ କହୁଥିଲେ,- "ଗଛଟି ଥିବା ହେତୁ ଆମ ବିଜ୍ଞାପନଟି ବେଶୀ ଦୂରକୁ ଦେଖା ଯାଉନାହିଁ । ଏହା ଆମ ବ୍ୟବସାୟରେ ବାଧା ଆଣିବ ।" ସରକାରୀ ଅଫିସର ଜଣକ ସ୍କୁଲ ବହିର କଥାକୁ ଦୋହରାଇଲେ,- "ବୃକ୍ଷ ଆମର ଜୀବନ ।" ହେଲେ କମ୍ପାନୀ ଅଧିକାରୀଙ୍କ ଉତ୍ତର ଥିଲା ଅତି ତୀକ୍ଷ୍ଣ, "ଏ ଗଛମାନେ ଜଙ୍ଗଲରେ ନବଢ଼ି ମଣିଷମାନଙ୍କ ପାଖରେ କାହିଁକି ବଢୁଛନ୍ତି ! ଜନବସତୀ ଅଞ୍ଚଳରେ ଏସବୁ ଅଧିକ ବଢ଼ିବା ମଣିଷ ପାଇଁ ବିପଦ ନୁହେଁ କି ?" ତଥାପି ସରକାରୀ ଅଫିସର ଜଣକ ସରକାରୀ ନିୟମର ଧାରା ଉପଧାରାର ଉଦାହରଣ ଦେଇ, "ଗଛକୁ କାଟିବା ବେଆଇନ" ବୋଲି ଯୁକ୍ତି କରୁଥିଲେ । କମ୍ପାନୀ ଅଧିକାରୀ ଜଣକ ସହସା କହିଲେ,- "ଆପଣଙ୍କୁ ଆମ କମ୍ପାନୀର ଖର୍ଚ୍ଚରେ ଆମେରିକା ପଠାଇବୁ । ଆପଣ ସେଠାରେ ଦେଖିବେ ସହରର ଅନତୀଦୂରରେ କମ୍ପାନୀମାନେ କେଉଁଭଳି ଜଙ୍ଗଲ ସୃଷ୍ଟି କରିଛନ୍ତି । ଆମେ ରାଜ୍ୟ ସରକାରଙ୍କ ଠାରୁ ଲିଜ୍‌ରେ ଜମି ନେଇ ସେମିତି ଜଙ୍ଗଲ ସୃଷ୍ଟି କରିବୁ ।" ଏହାପରେ ସେମାନେ କିଛି ସମୟ ନିଜ ଭିତରେ ଆଳାପ କରି ପଳାଇଯାଇଥିଲେ । ଏତିକି ସୂଚନା ହୋଡିଙ୍ଗ ପାଇଁ ଥିଲା ଯଥେଷ୍ଟ । ସେ ତା ସମୟର ଦ୍ୱନ୍ଦ୍ୱ ଓ ତା'ର ସମାଧାନର ରାସ୍ତା ସମ୍ପର୍କରେ ଭଲ ଭାବରେ ଜାଣିଥିଲା ।

ସେହି ହଳଦିଆ ବସ୍ତ୍ରଧାରୀ ଲୋକମାନେ ନିଜର ଶେଷ ଧାଡ଼ି ଟିକକ ଗାଇଲେ,- "ଅବଧି ପୁରୀ ବୈକୁଣ୍ଠ ଶିଖଇ, ନରନାରୀ ସଦଗତି ପାଇ" ଗାଇ ନିଜ ଗଡୁର ଶେଷ ଜଳ ଟିକକ ବୃକ୍ଷର ମୂଳରେ ଦେବାର ଠିକ୍ ପରେ ପରେ ଡ୍ରୋଜରର ଆଘାତ ବାଜିଲା ଢ଼ଙ୍ଗ୍.... । ଏହା ଥିଲା ଧର୍ମ ମିଶ୍ରିତ ବିକାଶର ପ୍ରଥମ ପ୍ରହାର । ବୃକ୍ଷଟି ମାଟିକୁ ଆହୁରି ଜୋର୍‌ରେ

ଧରିନେଲା । ଟିକେ ସାହାଯ୍ୟ ପାଇଁ ହୋଡ଼ିଙ୍ଗ ଆଡ଼କୁ ଚାହିଁଲା ବେଳକୁ ସେ କେବଳ ହସୁଥିଲା । ପୁଣିଥରେ ଡ୍ରୋଜର ଆଘାତ ଦେଲା । ବିଜ୍ଞପିତ କମ୍ପାନୀର ସେହି ଲାଭର ଆଘାତ ଗଛ ମୂଳେ ଛୋଟ ଗାତଟିଏ କରିଦେଲା ।

ଗଛ ଉପରକୁ ଖପ୍‌ଖାପ୍ କରି ବେଶ କିଛି ଲୋକ ଉଠିଯାଇ ଗଛର ଉପର ଆଡ଼କୁ ଏକ ମୋଟା ଡାଳରେ ଫାଶୀର ଫନ୍ଦା ଲଗେଇ ଦେଲେ ଓ କାଟିବା ପାଇଁ ଓହ୍ଲାଇ ଆସିଲେ । ବୃକ୍ଷଟି ସେଥିରେ ପ୍ରତିବାଦ କରିପାରିଲା ନାହିଁ । ନିଜକୁ ସେ ଅସହାୟ ମନେକଲା । ରାସ୍ତାରେ ଯିବା ଆସିବା କରୁଥିବା ମଣିଷମାନଙ୍କୁ ଚାହିଁ କିଛି କହିବାକୁ ଚେଷ୍ଟା କଲା । ମାତ୍ର ସେହି ମଣିଷମାନେ ଥିଲେ ନୀରବ ଦେଖଣାହାରୀ । ଆଜି ପର୍ଯ୍ୟନ୍ତ ସେମାନଙ୍କ ଦୈନନ୍ଦିନ ଜୀବନରେ ସାମିଲ ହୋଇଥିବା ସେହି ବୃକ୍ଷର ଉପକାରିତାକୁ ସେମାନେ ଭୁଲିବାର ପ୍ରୟାସ ଯେମିତି କରୁଥିଲେ । କେହି ଜଣେ ହେଲେ ପ୍ରତିବାଦ କରୁନଥିଲେ । ସମସ୍ତେ ଯେମିତି ସେହି କଥାକୁ ଧରିନେଇଥିଲେ 'ଏତେ ବଡ଼ ବୃକ୍ଷର ସ୍ଥାନ କେବଳ ଜଙ୍ଗଲରେ...' । ହେଲେ ସେ ଜଙ୍ଗଲ କାହିଁ ? ଆଜି ଜଙ୍ଗଲ ତ କେବଳ ଭୌଗଳିକ ମ୍ୟାପ୍‌ରେ ସବୁଜ ରଙ୍ଗ ପାଲଟି ଯାଇଛି । ପାହାଡ଼ର ପାଦ ଦେଶ ଲୋଭୀ ମଣିଷର ପାମ୍ପ୍ଲେନ ମାଡ଼ରେ ବିକୃତ ହୋଇଛି । ନଦୀ ଆଉ ନଦୀ ହୋଇ ନାହିଁ- ଆବର୍ଜନା ପୂର୍ଣ୍ଣ ନଳା । ଜଙ୍ଗଲ ଆଉ ଜଙ୍ଗଲ ହୋଇ ରହିନାହିଁ କେବଳ କାର୍ବନ ଟ୍ରେଡିଙ୍ଗ୍‌ର ହିସାବ । ଏଥିରେ ବିଚରା ବୃକ୍ଷଟି ଯିବ କୁଆଡ଼େ ?

ଏହି ସମୟରେ ପୁଣି ଡ୍ରୋଜର ମାଡ଼ ବାଜିଲା ଢଙ୍ ଓ ତାହା ମୂଳର ଗାତକୁ ଆଉ ଟିକେ ବଡ଼ କରିଦେଲା । ଡ୍ରୋଜରର କ୍ରମାଗତ ମାଡ଼ରେ ବୃକ୍ଷର କିଛି ଚେର କଟ କଟ କଟିଗଲା ଓ ସେ ନିଜ ଭିତରେ ଆହୁରି ହତାସ ଅନୁଭବ କଲା । ସହରବାସୀଙ୍କୁ ଚାହିଁ ନିଜ ଭିତରେ ସେ ଗୁଣୁଗୁଣେଇଲା,- 'କବିର କବିତାରେ ପଂକ୍ତି ମୁଁ, ଗାଳ୍ପିକର ଗଳ୍ପରେ ଉପମା ମୁଁ, ନାଟ୍ୟକାରର ନାଟକରେ ଦୃଶ୍ୟ ମୁଁ । ଚିତ୍ରକାରର ସ୍କେଚ, ନେତାଙ୍କ ଭାଷଣରେ ସ୍ଥାନ, ବନ୍ଧୁକୁ ଖୋଜୁଥିବା ବନ୍ଧୁର ଠିକଣା, କେତେବେଳେ କାହା ପାଇଁ ବର୍ଷା ତ କାହା ପାଇଁ ଖରାରେ ଆଶ୍ରା ମୁଁ । ଏ ସଭ୍ୟତାର ଆରମ୍ଭ ମୁଁ ହେଲେ ଆଜି ପୁଣି ମଣିଷର ଉନ୍ନତିରେ ବାଧକ ମୁଁ... ?' ଦୀର୍ଘ ନିଶ୍ୱାସ ନେଇ ବୃକ୍ଷଟି ପୁଣି ଚୁପ୍ ରହିଲା ।

ଏବେ ଯେ ତାର ଶେଷ ସମୟ ଆସିଗଲା ସେ ଜାଣିପାରିଲା । ଏଥର ସେ ଉଦ୍ଧାର ପାଇଁ ହୋଡିଙ୍ଗକୁ ଅନୁରୋଧ କରିବା ଭୁଲିଗଲା । କେବଳ ଉଚ୍ଚ ସ୍ୱରରେ ଏତିକି କହିଲା, "କୃତଜ୍ଞତା ନୁହେଁ ବନ୍ଧୁ କୃତଘ୍ନତା ଆଜିର ସମୟର ମୂଲ୍ୟବୋଧ । ଦିନେ ତୁମେ ବି ଏହାର ଶିକାର ହେବ ଓ ମଣିଷସମାଜ ତୁମକୁ ମଧ୍ୟ ତୁମ ମୃତ୍ୟୁର ରାସ୍ତା ଦେଖାଇଦେବ ।" ସେଥିପ୍ରତି କିନ୍ତୁ ହୋଡିଙ୍ଗର ହୋସ୍ ନଥିଲା ।

ଏଥର ଡ୍ରୋଜରର ଚୋଟ ଥିଲା ଆହୁରି ଶକ୍ତ । ତାହାଥିଲା ପ୍ରକୃତି ଉପରେ ଲାଭର ଚୋଟ । ବୃକ୍ଷକୁ ତାହା କିଛି ସମୟ ଦୋହଲାଇ ଦେଲା । ସେହିଥିରେ ଉତ୍ସାହିତ ହୋଇ ଦଉଡ

ଧରିଥିବା ମଜୁରିଆ କଟାଳିମାନେ ସେହି ଗେରୁଆଧାରୀଙ୍କ ସ୍ୱର ସହିତ ଏକାଥରେ ଆବାଜ ଦେଲେ, "ଜୟ ଶ୍ରୀରାମ" । ଏହା ପରେ ଏକାଥରେ ଡ୍ରୋଜର ମାଡ଼ର ଶବ୍ଦ ସହିତ ମଣିଷମାନଙ୍କର "ଜୟ ଶ୍ରୀରାମ" ଧ୍ୱନି ଜୋରରେ ଶୁଣାଗଲା ଓ ଅଶ୍ୱତ୍ଥ ବୃକ୍ଷଟି ମାଟି ସହିତ ଏତେ ବର୍ଷର ସମ୍ବନ୍ଧକୁ ତୁଟାଇ ଦେଇ ଭଡ଼ଭାଡ଼ କରି ପୁଣି ସେହି ମାଟିରେ ଶୋଇଗଲା । ଭିଡ଼ ଭିତରେ "ହୋ..." କରି ଏକ ଆନନ୍ଦର ସ୍ୱର ଶୁଣାଗଲା । ଜଣକର ମୃତ୍ୟୁ ବେଶ୍ କିଛିଙ୍କୁ ଆନନ୍ଦ ଦେଉଥିଲା । ଏଥର ଅଶ୍ୱତ୍ଥ ବୃକ୍ଷର ଡ଼ାଳର ମାଡରେ ହୋଡିଙ୍ଗଟିର ଗୋଟେ ପାଖ ନଇଁଗଲା । ସେହି ଯନ୍ତ୍ରଣାକୁ ଭୁଲି ହୋଡିଙ୍ଗଟି ଆନନ୍ଦରେ ହସୁଥିଲା ।

ଗଛର କୋଡ଼ର ଗୁଣ୍ଡୁଚି ତା'ର ଏବେ ଛୁଆ ଦେଇଥିଲା । ସକାଳୁ ବହୁତ ଥର ଚେଷ୍ଟା କଲାଣି ଛୁଆମାନଙ୍କୁ ସେଠାରୁ ନେବା ପାଇଁ । ହେଲେ ଲୋକାରଣ୍ୟ ହେତୁ ବହୁତ ଥର ଗଛର କୋରଡ଼ରେ ତଳକୁ ଯାଇ ପୁଣି ରାସ୍ତା ନପାଇ ପିଲାଙ୍କ ପାଖକୁ ଫେରି ଆସୁଥିଲା । ଏଥର ଗଛଟି ଦୋହଲିବା ଦେଖି ନିଜର ଛୁଆକୁ ପାଟିରେ ଧରି ଓହ୍ଲାଇଲାବେଳକୁ ଏକ ବଡ଼ ଡାଳର ତଳେ ପଡ଼ି ଚେଂ ଚେଂ ଡାକିବାକୁ ଲାଗିଲା । ହେଲେ ବିଜୟୀଙ୍କ ଚିତ୍କାର ଓ କୋଳାହଳ ଭିତରେ ସେ ସେହି ଚିଂ ଚିଂ ଶବ୍ଦ କୁଆଡ଼େ ମିଳାଇଗଲା ।

ପ୍ରଧାନମନ୍ତ୍ରୀ ଆସିବା ସହିତ ସପିଙ୍ଗମଲ୍ ଶୁଭ ଉଦଘାଟନ ହେଲା । ଲୋକେ ୨୦ ପ୍ରତିଶତ ରିହାତି ପାଇ ଜିନିଷ କିଣିଲେ । କ୍ରମଶଃ ସହରବାସୀ ବୃକ୍ଷର ସ୍ମୃତିକୁ ଭୁଲିବାକୁ ଲାଗିଲେ ଓ ବୃକ୍ଷହୀନ ଜୀବନ ସହିତ ଆନନ୍ଦରେ ବୁଝାମଣା କରିନେଲେ । ଆପଣବି ସେହି ସହରକୁ କେବେ ଯାଉଥିଲେ ସହରର ବହୁଦୂରରେ ସେହି ବିଜ୍ଞାପନଥିବା ହୋଡିଙ୍ଗ ବଦଳରେ ଓ ତା'ର ସହିତ ଜ୍ଞାତିକୁଟୁମ୍ବମାନଙ୍କୁ ଦେଖିବେ । ହୁଏତ ସେହି ହଳଦିଆ ବସ୍ତ୍ରଧାରୀମାନଙ୍କ ଧ୍ୱନ ମଧ୍ୟ ଦୂରରୁ ଶୁଣିପାରିବେ । ହେଲେ ସେହି ସ୍ଥାନରୁ ହଜି ଯାଇଥିବା ଅଶ୍ୱତ୍ଥ ବୃକ୍ଷ ଓ ଅନ୍ୟମାନଙ୍କର କାହାଣୀ କିନ୍ତୁ ସହରବାସୀଙ୍କ ମୁଖରୁ କେବେ ଶୁଣିବେ ନାହିଁ । ସମସ୍ତେ ତାହାକୁ ଭୁଲିଯାଇଛନ୍ତି ଜାଣିବେ ।



# ବେଣ୍ଟ ହଜିଯାଇଥିବା ଦା'

"ରାତି ସାରା କିଛି ଖାଇନି । ସେମିତି ଶୋଇଛି ଯେ ଶୋଇଛି । ଟିକେ ବି ଓଁ କରୁନାହିଁ କି କିଛି ନାଇଁ ।" ସ୍ତ୍ରୀ ଜଣକ ବିଛଣା ଛାଡ଼ି ଉଠିଗଲା ବେଳେ ତାର ଅସଜଡ଼ା ଲୁଗା ତଳେ ଘୁଷୁରୁ ଥିଲା ।

"ମୋର ଛୁଆ ଏଥର ବେଶୀ ଶୁଖିଗଲା । କାଲିଠୁ ଜର । ମୋ'ଠୁ କ୍ଷୀର ଟାଣିବା ବି ଛାଡ଼ି ଦେଇଛି ।" ଦୁଆର ପାଖରୁ ଡିବିରିଟି ଧରି ଚୁଲି ଆଡ଼କୁ ଟାଣି ହେଇଯାଉଥିଲା ସେ । ତା' ସ୍ୱରରେ ଥିଲା ବହୁତ କିଛି ହରାଇବାର କଷ୍ଟ ।

ଅଥଚ ଆଗନ୍ତୁକ ପୁରୁଷ ଜଣକ ବିଛଣା ଉପରେ ସେମିତି ପଡ଼ିଥିଲା । ବିଛଣାର ଆରକଡ଼ର ଲୁଗା ମେଞ୍ଚେ ବିଣ୍ଡା ହୋଇ ଥୁଆ ହେଲା ପରି ତା'କୁ ଲାଗିଲା । ବୋଧହୁଏ ଛୁଆଟି ଶୋଇଛି ଓ ତା'କୁ ଯେ ଜ୍ୱର ସେକଥା ସେ ବୁଝିପାରୁଥିଲା ।

ସେତେବେଳେ ସନ୍ଧ୍ୟା ଯାଇ ରାତି ଟିକେ ବଢ଼ିଲାଣି । ଦୂରରୁ ଫ୍ୟାକ୍ଟରିର ଢୁ ଢୁ ଲୁହାପିଟା ଶବ୍ଦ ଶୁଣାଯାଉଛି । ଫ୍ୟାକ୍ଟରିର ଆଲୋକ ନାରୀଟିର ମୁହଁରେ ପଡୁଛି । ତାର ଶୁଷ୍କ ମୁହଁକୁ ଭେଦକରି ତାର ସମଗ୍ର ଶରୀରକୁ ଯେମିତି ସେ ଆଲୋକ ଅନାବୃତ କରିଦେଉଛି । ବିଛଣା ଉପରେ ପୁରୁଷଟି ସେହି ଚିରା ଲୁଗା ଭିତରେ ସ୍ତ୍ରୀ ଲୋକଟିକୁ ଆଉ ଥରେ ଦେଖିନେଲା । ଅବଶ୍ୟ ତା'ର କାମ ଆଗରୁ ସରିଯାଇଥିଲା ।

ଚୁଲିରେ ନିଆଁ ଲଗାଇ ପାଖ ମାଟି ହାଣ୍ଡିଟି ବସାଇଲା ବେଳେ ସ୍ତ୍ରୀଲୋକଟି ପୁଣି ନିଜ ନିଜକୁ କହି ଚାଲିଥିଲା- "ଦିନରେ ବେଶୀ ଜର ହୋଇଗଲା, ଖାଲି ବାନ୍ତି କଲା । ଟିକେ ବି ପାଣି ପିଇଲା ନାହିଁ । ଯେତେଥର ଥନକୁ ତା'ର ପାଟିରେ ଗୁଞ୍ଜିଲି ଟିକେ ବି ଟାଣିଲା ନାହିଁ । ଘରେ କ'ଣ ଅଛି ଯେ ବାବୁକୁ ଦେଇଥାନ୍ତି !" କଣ୍ଠରେ ତା'ର ଭରିଯାଇଥିଲା କୋହ । ମାତ୍ର ସେହି ଢୁ ଢୁ ଶବ୍ଦ ଭିତରେ ତାହା ଯେମିତି ମିଳେଇ ଯାଉଥିଲା । ସ୍ତ୍ରୀ ଲୋକଟି ନିଜର ଚିରାଲୁଗାରେ ମୁହଁ ପୋଛିଲା ।

ଶେଯରୁ ଉଠିବାକୁ ଇଚ୍ଛା ହେଉନାହିଁ । ତଥାପି ସ୍ତ୍ରୀଲୋକଟିକୁ ତା'ର ପାଉଣା ଦେବା ପାଇଁ ପୁରୁଷଟି ନିଜର ପ୍ୟାଣ୍ଟ ଖୋଜିଲା । ସେହି ପ୍ରାୟ ଉଡ଼ିଯାଇଥିବା ଛପରକୁ ଭେଦ କରି

ଫ୍ୟାକ୍ଟରି ଆଲୋକ ଘରସାରା ବିଛାଡ଼ି ହୋଇପଡୁଛି । ଗୋଟେ କୋଣରେ କିଛି ଲୁଗା, ତା' ତଳକୁ ମାଠିଆଟି ଓ ତଳେ ପଡ଼ିଯାଇଛି କିଛି ଚାଉଳ । ଦଉଡ଼ିରେ ଓହଳା ଯାଇଛି ତୁମ୍ବାଟିଏ । ବେଣ୍ଟ ନଥିବା ଦା' ଟିକୁ ଦେଖି ସେ ଜାଣିଲା ଯେ ଏ ଘରଟିର ମୁଖ୍ୟ ଦିନେ ତା'ରି ଭଳି ଏକ ଚାଷୀ ଥିଲା । ସମ୍ଭବତଃ ଫ୍ୟାକ୍ଟରିରେ ସେମାନଙ୍କ ଚାଷ ଜମି ସବୁ ଚାଲିଯାଇଛି ।

"ତାର ବାପା ସିନା ତା' ପାଇଁ ଭଲ ଓଷଦ କେଉଁଠୁ ଆଣିଦେଇଥାନ୍ତା । ଏଇ କମ୍ପାନୀ ମେସିନ ଭିତରେ ତା' ଜୀବନତ କେବେଠୁ ଚାଲିଗଲାଣି । ମୁଁ ମାଇକିନାଟା କୁଆଡ଼େ ଯିବି ? ଗାଁ ଲୋକେ କିଏ କୁଆଡ଼େ ଉଠିଗଲେ, ମୁଁ ଏକୁଟିଆ ଏଠି ଏମିତି ପଡ଼ିଛି ।" ଚୁଲି ଆଡକୁ ମୁହଁ କରି ସେ କହିଲା ଓ ଆଗନ୍ତୁକଟିର ପିତୃତ୍ୱ ମନ କୌତୁହଳୀ ହୋଇପଡ଼ିଲା । ସେହି କୌତୁହଳୀ ମନ ନେଇ ସେ କପଡ଼ା ଭିତରେ ପିଲାଟିକୁ ଏଥର ଖୋଜିଲା । କିଛି ସୋର ଶବ୍ଦ ନାହିଁ । କତରାଲୁଗା ଭିତରୁ ମୁହଁକୁ ବାରିବା କଷ୍ଟ । ଧୀରେ ଧୀରେ ସେ ଛୁଆର ଦେହରେ ହାତ ମାରିଲା । ଉଠିଗଲେ କାଳେ କାନ୍ଦି ଉଠିବ । ସେ ଏକ ଖଇଫୁଟା ଶରୀରକୁ ଛୁଇଁବ ବୋଲି ଭାବିଥିଲା । ମାତ୍ର ହାତ ତା'ର ସମ୍ପୂର୍ଣ୍ଣ ଥଣ୍ଡା ପଡ଼ିଯାଇଥିବା ଦେହକୁ ଛୁଇଁଲା ପରି ଲାଗିଲା । ଏଥର ଚମକି ପଡ଼ି ସେ ପୁରା ଦେହରେ ହାତ ବୁଲାଇ ଆଣିଲା । ଛୁଆଟି ମରି ସେତେବେଳକୁ ପୁରା ଥଣ୍ଡା ପାଲଟିଗଲାଣି । ପୁରୁଷଟିର ମୁଣ୍ଡ ଘୂରିଗଲା, ଦେହରେ ଝାଳ ବୋହିଗଲା । ସେ ଦ୍ରୁତ ଗତିରେ ନିଜର ପ୍ୟାଣ୍ଟ ପିନ୍ଧି ସ୍ତ୍ରୀ ଲୋକଟି ପାଖରେ ଟଙ୍କା କିଛି ଥୋଇଦେଇ ବାହାରକୁ ଚାଲିଆସିଲା ।

ଗୋଟେ ମୃତ ଶିଶୁ ପାଖରେ ତା'ର ମା' ସହିତ ମିଶିଲା ବେଳେ ସେ କେମିତି କିଛି ଜାଣିପାରିଲା ନାହିଁ ? ଏହି ପ୍ରଶ୍ନ ପୁରୁଷଟିକୁ ଆନ୍ଦୋଳିତ କଲା । ତାର ବିବେକ ତା'କୁ ଧିକ୍ କଲା, ତା'ର ମୁଣ୍ଡ ଘୂରିଗଲା ପରି ଲାଗିଲା । ପ୍ୟାକେଟରୁ ବିଡ଼ି କାଢ଼ି ରାସ୍ତା ପାଖ ପଥର ଉପରେ ବସି ଟାଣିଲା ବେଳେ ତାକୁ ବହୁତ ଦୋଷୀ ଦୋଷୀ ଲାଗୁଥିଲା । ସ୍ୱାମୀଟି ଆଗରୁ ମରିଯାଇଥିଲା, ଏବେ ଛୁଆଟି ମରିଗଲା । ଆଉ କେତେଦିନ ପୁଣି ସ୍ତ୍ରୀ ଲୋକଟି ବଞ୍ଚିବ ?

ତା'ର ବିବ୍ରତ ମନ ଛାଡ଼ି ଆସିଥିବା ନିଜ ଘର ଆଡ଼କୁ ଫେରିଗଲା । ମନେପଡ଼ିଲା, ସେ ନିଜେ ଛାଡ଼ି ଆସିଥିବା ସ୍ତ୍ରୀ, ପିଲା ଓ ମା'ର କଥା । ଘରେ ତା'ର ପିଲା କେମିତି ଥିବ, ବାପ ମନ ତା'ର ଘୂରିଗଲା । ଘର ଛାଡ଼ି ଆସିବା ଏ ଭିତରେ କେତେ ମାସ ହୋଇଗଲାଣି ?

ପୁଳାଏ ଧୂଆଁ ଛାଡ଼ିଲା ବେଳେ ଆଖିରେ ତା'ର ଲୁହ ଭରିଗଲା । ନିଜର ମନଟା ଘାଣ୍ଟି ଚକଟି ହେଲାବେଳେ ନିଜର ସ୍ତ୍ରୀ ଯେମିତି ତାକୁ ଧିକ୍କାରୁଥିଲା । ଏଥର ସେ ଆହୁରି ବ୍ୟସ୍ତ ହୋଇପଡ଼ିଲା ।

ବହୁତ ବଡ଼ କମ୍ପାନୀ, ହଜାର ହଜାର ଲୋକ କାମରେ ଲାଗିଛନ୍ତି । କେତେ ଆସୁଛନ୍ତି କେତେ ଯାଉଛନ୍ତି ପୁଣି କେତେ ମେସିନ୍ ଭିତରେ ନିଜର ଠିକଣା ଶେଷ କରିଦେଉଛନ୍ତି ଠିକ

ସ୍ତ୍ରୀ ଲୋକର ସ୍ୱାମୀଟି ପରି । ଆଉ କିଛି ଦିନ ଗଲେ କମ୍ପାନୀର ଉଦ୍‌ଘାଟନ ହେବ । ବଡ଼ ମାଲିକ ଆସିବେ । ସେଥିପାଇଁ ରାତିଦିନ କାମ ଚାଲିଛି ।

ଠିକାଦାରକୁ ଆଗରୁ ସେ କେତେଥର ନେହୁରା ହୋଇଛି । ବାକି ହିସାବ ତୁଟାଇ ଦେଲେ ସେ ଗାଁ ଆଡ଼େ ବୁଲି ଆସନ୍ତା । ଥରେ କାମ ଛାଡ଼ିଦେଲେ ଆଉ କାହାକୁ ରଖିଦେବ ବୋଲି ଠିକାଦାର ଧମକ ଦେଉଛି । ତେଣୁ ଠିକାଦାର ତା'ର ପୁରୁଣା ହିସାବ ତୁଟାଉ ନାହିଁ କି ସେ ବି ଭରସି କରି ଠିକାଦାରକୁ ବାଧକରି କହିପାରୁନାହିଁ । ଏଥର କିନ୍ତୁ ତା'ର ବାପା ମନ ଆଉ ମାନିବାକୁ ରାଜି ନଥିଲା । ଥଣ୍ଡା ହୋଇ ମରିପଡ଼ିଥିବା ସେ ଛୁଆର କଙ୍କାଳ ଦେହ ଥରକୁ ଥର ତା'ର ଦେହ ଓ ମନକୁ ଶିହରାଇ ଦେଉଥିଲା ।

ରାତିସାରା ଏ ଟ୍ରକ ଡାଲା ତ ପୁଣି ସେ ଟ୍ରକ ଓ କେବେ ବସ୍ ଧରି ସକାଳୁ ସକାଳୁ ନିଜ ଗାଁରେ ପହଞ୍ଚିଗଲା । ଘରର ଦୁଆର ଠକ୍ ଠକ୍ କଲା । ଅପେକ୍ଷା କଲା କିଏ ଆସିବ ? କନିଆ ତା'ର ତା ଛୁଆକୁ ଧରି ଆସିବ ନହେଲେ ମା' ତା'ର ନାତିକୁ ଧରି ଦୁଆର ଖୋଲିବ । ଦୁଇ ତିନି ଥର ଏ ପରି ଦୁଆର ବାଡ଼େଇଲା ପରେ ବୁଢୀ ମା ତା'ର ଏକୁଟିଆ ଦୁଆର ଖୋଲିଲା । ପୁଅକୁ ସାମ୍ନାରେ ଦେଖି ଜୋରରେ କାନ୍ଦି ଉଠିଲା । କିଛି ବୁଝି ନପାରି ପୁରୁଷଟି ନିଜ ଘର ଭିତରକୁ ପଶିଗଲା ।

ପଛେ ପଛେ ମା' ତାର କୋହଭରା କଣ୍ଠରେ କହି ଉଠିଲା- "ତୁ ଆସିଲୁ ନାହିଁ କି ପଇସା ଦେଲୁ ନାହିଁ । ଗାଁରେ କାମ ନାଇଁନ । ତୋ ବୁଆରି ତ ତୋର ପିଲାକୁ ଧରି କେନ୍ ବାଟେ କାହା ସାଥେ ପଳାଇଲା । ମୁଁ ବୁଢୀଟା'ଏକ୍‌ଲା ତତେ ଚାହିଁ ବସିଛି ।" ଏତକ ଏକାଥରେ କହିଦେଇ ବୁଢ଼ୀ ଜୋରରେ କାନ୍ଦିପକାଇଲା । ସେହି ଘରର ବାରଣ୍ଡାରେ ପୁରୁଷଟି ଲଥ୍ କରି ବସିଗଲା । ତା'ର ଦେହଟି ଧୀରେ ଧୀରେ ଥଣ୍ଡା ପାଲଟିଗଲା ।



# କିଛି ଠିକଣା ହଜିଗଲା ପରେ....

ଧୀରେ ଧୀରେ ସୂର୍ଯ୍ୟ ନଇଁ ଆସିଲେଣି । ସନ୍ଧ୍ୟା ଆକାଶ ସହରକୁ ଘେରିବାକୁ ବସିଲାଣି । ଅନ୍ଧାରକୁ ପରାସ୍ତ କରିବାକୁ ଯାଇ ରାସ୍ତା କଡ଼ର ନିଅନ ଲାଇଟଗୁଡ଼ିକ ଜଳିବାକୁ ଆରମ୍ଭ କଲାଣି । ଦୂର ମନ୍ଦିରର ଘଣ୍ଟା ଶବ୍ଦ ସହରର ପାପମାନଙ୍କୁ ଗୋଡ଼ାଇବାକୁ ବସିଲାଣି । ଅଫିସମାନଙ୍କରୁ ବାହାରୁଥିବା ବାବୁମାନେ ଏବେ ନିଜ ପାଇଁ ଆମୋଦର ସ୍ଥାନ ଖୋଜିଲେଣି ।

ଦର୍ପଣ ସାମ୍ନାରେ ସଜେଇ ହୋଇ ନାରୀଟି ଭାବୁଛି ଆଜି ତା'ର ନାମ କଣ ? ଜୁଲି ? ମୁଣ୍ଡର ଛୋଟ ବେଣୀ ଉପରେ ଫୁଲଟିଏ ଖୋସି ଦର୍ପଣରେ ଏପଟକୁ ସେପଟକୁ ଦେଖିଲାଣି । ନାମଟି କିନ୍ତୁ ବହୁତ ପୁରୁଣା ହୋଇଗଲାଣି । ପ୍ରୀତୀ ? ଆଧୁନିକ ନାମଟିଏ ତ ! ଦୁଇ କାଖରେ ପରଫ୍ୟୁମ ସ୍ପ୍ରେ କଲା ସେ । ଶାଢ଼ୀଟା ଟିକେ ପୁରୁଣା ହୋଇଗଲାଣି । ନାମ ସହିତ ଖାପ ଖାଉନି । ରାଧା ? ନା ସବ୍‌ନମ୍ ? ନା ନା ଆଜି ପାଇଁ ଆଞ୍ଚଳ । ଶାଢ଼ୀର ଆଞ୍ଚଳଟିକୁ ସଜେଇଦେଇ ଲୁଗାକୁ ଆଉ ଟିକେ ଲାହି ତଳକୁ ଠେଲିଦେଲା ସେ ।

ଆଜି ପାଇଁ ଆଞ୍ଚଳ... ! ଦର୍ପଣ ସାମ୍ନାରେ ନାରୀଟି ନିଜକୁ ନିଜେ କହି ବହୁତ ଜୋରରେ ହସିଲା । ଏ କଣ ? ସେ ଏ ଭିତରେ ନିଜର ପ୍ରକୃତ ନାମଟି ଭୁଲି ସାରିଲାଣି ନା କ'ଣ !

ନିଜକୁ ସେହି ହଜିଯାଇଥିବା ଇତିହାସ ଭିତରୁ ଟାଣି ଆଣିଲା ବେଳେ ସେ ଅଚାନକ ଝୁଣ୍ଟିଗଲା ଖଟର ଖୁରାରେ । ବିକଳରେ ପାଟି କରି ଉଠିଲା, "ଏ ବୋଉ ଲୋ.... ।"

ଏଥର ଖଟ ଉପରେ ଟିକେ ବସିପଡ଼ିଲା । ପୁଣି ଉଠିଯାଇ ଘରକୋଣରେ ଥିବା ଠାକୁରଙ୍କ ପାଖରେ ଧୂପଟିଏ ଦେଇ ନୂଆ ଗରାଖଙ୍କ ପାଇଁ ନିଜକୁ ପ୍ରସ୍ତୁତ କରିନେଲା । ଦୁଆର ଠିକ ଖୋଲିବାକୁ ପାଦ ବଢ଼ାଉଛି, ତା'ଆଗରୁ ଦୁଆରରେ ଠକ୍ ଠକ୍ ଶବ୍ଦ ତାକୁ ପ୍ରସ୍ତୁତ କରିଦେଲା । ଏଥରର ଠକ୍ ଠକ୍ ଶବ୍ଦ କିନ୍ତୁ ଥିଲା ଟିକେ ଭିନ୍ନ ।

"ଆରେ ତୁମେ !"

"କାହିଁକି କଣ ଭୁଲ୍ ସମୟରେ ଆସିଗଲିକି ?

"ଆମ ଭଳି ଧନ୍ଦାବାଲିଙ୍କ ପାଇଁ ଭୁଲ୍ ସମୟ କଣ ? ଆମର ଦେହ, ମନ, ଦ୍ୱାର ସବୁତ ତୁମ ପାଇଁ ସଦାବେଳେ ଖୋଲା ।" କ୍ଷୀଣ ହସି ନାରୀଟି ଉତ୍ତର ଦେଲା । ପଶିଆସିଥିବା

ବ୍ୟକ୍ତିଟି ଏଥର ଆମୋଦରେ ହସିଦେଇ କହିଲା, "ଆରେ, ତୋ ପୁଅ ଖବର ଦେଇଛି ପରୀକ୍ଷା ଫର୍ମ ପୂରଣ ପାଇଁ ଦଶ ହଜାର ଟଙ୍କା ଦରକାର ।"

"ପୁଣି ଟଙ୍କା! ସେଥିରୁ ତୁମର କେତେ ?" ଆଜି ପାଇଁ ନିଜର ନାମ ରଖିଥିବା ଆଞ୍ଚଳର ପାଟିରୁ ସ୍ୱତଃ ବାହାରି ଆସିଲା । ସେ ଆଉଥରେ ଲୁଗାକୁ ସଜାଡ଼ି ଚାର୍ଜ ଲାଇଟ୍‌ଟିକୁ ଦୂରକୁ ରଖିଦେଲା ।

"ମୋତେ ବାପା କରି ପୁଅକୁ ପାଠ ପଢ଼ାଉଛୁ । ତା'ର ପାଉଣା ଦେବୁ ନାହିଁ କି ? ବସି ପଡୁ ପଡୁ ବ୍ୟକ୍ତିଟି ଆଞ୍ଚଳର ଲୁଗାକାନିକୁ ଜୋରରେ ଭିଡ଼ି ଧରିଲା । ଆଞ୍ଚଳ ତାହାର ଜବାବ ଦେବାକୁ ଉଚିତ ମନେକଲା ନାହିଁ । ଗରାଖକୁ ଜବାବ ଦିଆଯାଏ ନାହିଁ । ପୁଣି ଏ ଗରାଖ କେବଳ ଅନ୍ୟକେହି ନୁହେଁ ତା' ପାଇଁ ଏକ ଠିକଣା ମଧ୍ୟ ।

ଆଜିର ଆଞ୍ଚଳ ଯେଉଁ ଦିନ ପ୍ରଥମେ ଏହି ସହରରେ ପାଦ ଦେଇଥିଲା ଏହି ମିଶ୍ର ତା ପାଇଁ ଥିଲା ପ୍ରଥମ ଆଶ୍ରୟଦାତା । ଆଖିରୁ ଆଖିରୁ ମିଶ୍ର ବୁଝିଯାଇଥିଲା ଠିକଣାବିହୀନ ବିହଙ୍ଗଟି ପାଇଁ ନୀଡ଼ର ଆବଶ୍ୟକତା । ସେ ଆଣି ରଖିଦେଇଥିଲା ସେ ସମୟରେ ସହର ଯେଉଁଠି ସରିଯାଉଥିଲା ସେହି ପାଖରେ । ସେବେ ସେଇଠି ଜନବସତି ପ୍ରାୟ ନଥିଲା କହିଲେ ଚଳେ । ସେଇଠି ଆଞ୍ଚଳ ପାଇଥିଲା ନୂଆ ଧନ୍ଦା, ନୂଆ ଆଶ୍ରୟ, ପ୍ରଥମ ଆୟ ଓ ନୂଆ ପରିଚୟ । ତା'ପରଠାରୁ ମିଶ୍ର ଆଉକେବେ ତାକୁ ଛାଡ଼ି ଯାଇନାହିଁ କି ସିଏ ବି କେବେ ମିଶ୍ରର ସାମାଜିକ ପରିଚୟ ସହିତ ନିଜକୁ ମିଶାଇବାର ସ୍ୱପ୍ନ ଦେଖିନାହିଁ । ହଁ, ଏ ଭିତରେ ସେ ମା' ହୋଇଛି, ତା' କୋଳକୁ ପୁଅ ଆସିଛି, ତା'ର ବାପା କିଏସେ ସେ କଥାକୁ ସେ ଗୁରୁତ୍ୱ ଦେଇନାହିଁ । ତା'କୁ ଲାଗିଛି ତା'ର ପୁଅ ଠିକ୍ ତା'ର ବସ୍ତି ପାଖରେ ନୂଆ କରି ସମସ୍ତଙ୍କ ଉଦ୍ୟମରେ ଗଢ଼ି ଉଠିଥିବା ମନ୍ଦିରର ଠାକୁର ପରି । ସେହି ମନ୍ଦିରର ବି କେହି ମାଲିକ ନାହାଁନ୍ତି । ଭଗବାନ ସେଠି ବସିଛନ୍ତି, ସବୁ ଦିନ ସକାଳେ ସନ୍ଧ୍ୟାରେ ଘଣ୍ଟ ବାଜୁଛି ଓ ଭଗବାନ ନିଜର ଉପସ୍ଥିତି ଦର୍ଶାଉଛନ୍ତି ।

ଏ ଭିତରେ ମିଶ୍ର ଟଙ୍କା ଧରି ଯାଇସାରିଲାଣି । କହି ଦେଇଗଲା ତା' ଝିଅର ପ୍ରଥମ ପୁଆଣି ହେବ, ଘରେ ଟଙ୍କା ନଦେଲେ ଶ୍ରୀମତୀ ତା'ର ଘରେ ଭର୍ତ୍ତିକରିଦେବ ନାହିଁ । ଏ ବାହାନା ଅବଶ୍ୟ ମିଶ୍ରର ନୂଆ ନୁହେଁ । ଆଞ୍ଚଳର ଟଙ୍କା ଯେ ମିଶ୍ର ଘରର ଏରୁଣ୍ଡି ଡିଏଁ ସେକଥା ଭାବି ଭାବି ସେ ବୁହେ ହସେ । ସେଥର ବଳକା ଟଙ୍କା ତା' ପୁଅ ପାଖକୁ ନିଶ୍ଚେ ପଠାଇଦେବ ବୋଲି ପ୍ରତିଶୃତିଦେଇ ମିଶ୍ର କେଉଁ ଆଡ଼େ ଉଭାନ ହୋଇଗଲା ।

ଏଥର ଦର୍ପଣ ସାମ୍ନାରେ ଆଞ୍ଚଳ ଠିଆ ହୋଇ ନିଜର ଶାଢ଼ୀକୁ ପୁଣି ସଜାଡ଼ିଲା । ଶେଯରେ ପୁଣି ପରଫ୍ୟୁମ ସ୍ପ୍ରେ କରି ଦାଦାର ପାଟିକୁ ଅପେକ୍ଷା କଲା । ଗରାଖ ଗୋଟାଇବା ଦାୟିତ୍ୱ ବୁଢ଼ା ଦାଦାର । ଭାବନାରେ ଭାବନାରେ ସେ ଚାଲିଗଲା ନିଜ ବାପା ମା'ଙ୍କ ପାଖକୁ ଯାହାଙ୍କ ମରିବା ଆଜିକୁ କେତେ ବର୍ଷ ହୋଇଗଲାଣି । ସେମାନଙ୍କ କଥା ମନେ ପଡ଼ିଲେ

ତା'ର ଆଖି ସ୍ୱାଭାବିକ ଭାବେ ଓଦା ହୋଇଯାଏ । ସେମାନଙ୍କୁ ମନେପକାଇବା ଭିତରେ ସେ ମନେପକାଇଲା ନିଜର ଅତୀତକୁ, ନିଜର ଦୂର ଗାଁ, ଗାଁର ଦୁଇ ଧାଡିଆ ଘର, ଗାଁର ଏକ ପାଖରେ ନଦୀ, ନଦୀରେ ଭରା ପାଣି, ପାଣିକୁ ବାନ୍ଧି ସରକାର ବସାଇଲା ଡ୍ୟାମ, ଡ୍ୟାମର ପାଣି କମ୍ପାନୀକୁ ଯିବ ବୋଲି ସରକାରୀ ନୋଟିସ୍ ଘୋଷଣା ମଧ୍ୟ କଲା ।

ଆଜିର ଆଞ୍ଚଳ ଗଲା କାଲିର ଥିଲା ପାଠୁଆ ଝିଅ । ଏହି ପାଠ ଜାଣିଥିବା ହେତୁ ସେ ମଧ୍ୟ ପ୍ଲାକାର୍ଡ଼ରେ ଲେଖିଥିଲା ସ୍ଲୋଗାନ, "ମରିବୁ ପଛେ ଡରିବୁ ନାହିଁ ଜନମ ମାଟି ଛାଡ଼ିବୁ ନାହିଁ ।" ଅନ୍ୟର ଗୀତ ଖାତାରୁ ଗୀତ ଉତାରି ସେ ମଧ୍ୟ ବଡ଼ସଭାରେ ମାଇକ୍ ସାମ୍ନାରେ ଗାଇଥିଲା "ଚାଲରେ ଚାଲ ସାଥୀ ଚାଲରେ ଚାଲ, ଚାଲରେ ଚାଲ ସାଥୀ ଚାଲରେ ଚାଲ ।" ସେ ନିଜେ କବିତା ମଧ୍ୟ ଲେଖିଥିଲା, "ମାଟିର ସ୍ନେହ, ମାଟିର ମମତା, ମାଟିବିନା ହେବା ସଭିଏଁ ଏକୁଟିଆ ।"

ନିଜ ଅଞ୍ଚଳରେ ଡ୍ୟାମକୁ ବିରୋଧ ହେବା ଦେଖି ସେମାନଙ୍କୁ ସହଯୋଗ କରିବା ପାଇଁ ବାହାରୁ ବେଶକିଛି ସାଥୀ ମଧ୍ୟ ଆସୁଥିଲେ । କାହାର କାହାର ଭାଷଣ ତ ଆଉ କାହାର ଉଚ୍ଚସ୍ୱରରେ ଗାଉଥିବା ଗୀତ ତା ଦେହକୁ ଶୀତେଇ ଦେଉଥିଲା, ସେ କିଛି କ୍ଷଣ ଅନ୍ୟମନସ୍କ ହୋଇଯାଉଥିଲା । ସରକାରକୁ ବିରୋଧ କରି ସେ ପ୍ରଥମ କରି ଭୋଟ ମଧ୍ୟ ବିରୋଧି ଦଳ ଦେଇଥିଲା । ଭାବିଥିଲା ଏ ଲଢ଼େଇରେ ତା ଅଞ୍ଚଳର ଲୋକେ ନିଶ୍ଚୟ ନ୍ୟାୟପାଇବେ । ସେ ରାତିରେ ସ୍ୱପ୍ନ ଦେଖିଥିଲା ସମସ୍ତଙ୍କ ଆଗରେ ସେ ମଧ୍ୟ ଠିଆ ହୋଇ ସ୍ଲୋଗାନ ଦେଉଛି ଆଉ ସରକାରୀ ଗାଡ଼ିଗୁଡ଼ାକ ବନ୍ଧ ଦାଢ଼େ ଦାଢ଼େ ଫେରିଯାଉଛନ୍ତି । ନଦୀ ପୁଣି କୁଳୁକୁଳୁ କରି ବୋହିଗଲା ବେଳେ, ତା ବଢ଼ିଲା ବୟସର ସୂଚନା ଦେଇଯାଉଛି । ସେ ପାଣି ମାଠିଆଟି ଧରି ଏକୁଟିଆ ବନ୍ଧ ଉପରେ ଠିଆ ହୋଇଥିଲା ବେଳେ ତାକୁ ଲାଗୁଛି ସେହି ଗୀତ ଗାଉଥିବା ସାଥୀଜଣକ ଯେମିତି ଶ୍ରଦ୍ଧାରେ ତା'ର ନାମଧରି ଡାକିଦେଉଛି, 'ମି... ତା... ।' ସେ ପଛକୁ ଚାହିଁ ନିରାଶ ହୋଇଛି ।

ଯେଉଁ ଦିନ ଡ୍ୟାମ ପାଣି ଗାଁକୁ ଛୁଇଁଲା ସେହିଦିନ ସେ ତା' ବାପା ମା'ଙ୍କୁ ଧରି କଲୋନୀ କୁହାଯାଉଥିବା ଅତ୍ୟନ୍ତ ପଥୁରିଆ ଅଞ୍ଚଳକୁ ଉଠିଗଲା ଯେଉଁଠି ମାଟି ଟିକେ ତ ନଥିଲା, ଥିଲା ଖାଲି ପଥର ଓ ଗୋଡ଼ି । ସେମାନଙ୍କ ପାଖରେ ନା ଥିଲା କିଛି ବସତି ନା ଜଙ୍ଗଲ, ଚତୁର୍ଦ୍ଦିଗ ଥିଲା କେବଳ ଟାଙ୍ଗର ଭୂଇଁ । ସେହି ଦିନ ଆସିଲାବେଳେ ନିଜର ବୁଡ଼ି ଯାଉଥିବା ଘରକୁ ଚାହିଁ ବାମ ହାତର ବିଶି ଆଙ୍ଗୁଠିର ନଖକୁ ଦାନ୍ତରେ ଛିଣ୍ଡାଇ ଚିତ୍କାର କରି ସେ କହିଥିଲା, "ଏମିତି ତୋର ବି ଦିନେ ଠିକଣା ଲୋପ ପାଇଯାଉ, ସରକାର ।"

ମାସ କେତେଟାରେ ବାପା ମା'ଆଗ ପଛ ହୋଇ ଚାଲିଗଲେ । ଦାଦା ଖୁଡ଼ୀମାନେ କିଏ କେଉଁ କଲୋନୀକୁ ଗଲେ କି ଦାଦନଗଲେ କି ମରିହଜିଗଲେ ତା'ର ହିସାବ କେହ

କିନ୍ତୁ ରଖିଲେନାହିଁ । ସରକାର ପାଇଁ ସେମାନେ ବଳି ପଡିବା ଯେମିତି ତାଙ୍କ କପାଳରେ ଲେଖାଥିଲା ।

ସେତେବେଳକୁ ଦୁଇ ଜଣ ଗରାଖ ଯାଇସାରିଲେଣି । ସେମାନେ ଦେଇଯାଇଥିବା ଟଙ୍କାକୁ ଗଣି ବ୍ଲାଉଜ ଭିତରେ ଖୁଞ୍ଚି ଦେଲା ଓ ଦୁଆର ବନ୍ଧରେ ବଡ଼ ପଥରଟାକୁ ଦେଇ ଦାଦାକୁ ମନାକରି ପଠାଇଲା ମିତା ଓରଫ ଆଞ୍ଚଳ । ସେ ନିଜେ, ହାଲିଆରେ ଶୋଇଯାଇଥିଲା । ଆଖିରେ ପତା ଲାଗିଛି କି ନାହିଁ ଦୁଆରରେ ଠକ୍ ଠକ୍ ଶବ୍ଦ ସାଙ୍ଗକୁ ଏକ କର୍କଶ ସ୍ୱର ଶୁଣାଗଲା, "ଆବେ, ଖୋଲିବୁ କି ନାହିଁ ।"

ମିତା ନିଜ ଇଚ୍ଛା ବିରୁଦ୍ଧରେ ଉଠି ଦୁଆର ଖୋଲିଦେଲା । "କାଲି ସକାଳୁ ବସ୍ତି ଭଙ୍ଗା ହେବ । ଥାନା ସାହେବ ଖବର ପଠାଇଛନ୍ତି । ବସ୍ତିର ନେତ୍ରୀ ତୁ । ସମସ୍ତଙ୍କୁ ଠିକଣା ଜାଗାକୁ ଉଠିଯିବା ପାଇଁ ସାର୍ ଆଗୁଆ ଖବର ଦେଇଛନ୍ତି ।" ପୁଲିସ ଜଣକ ଏତକ କହିଲାବେଳେ କିନ୍ତୁ ମିତା ସ୍ତମ୍ଭୀଭୂତ ହୋଇଗଲା । ଆଗରୁ ନୋଟିସ୍ ନାହିଁ କି କିଛି ଶୁଣା ନାହିଁ । ମିତାର ପାଟିରୁ ସ୍ୱାଭାବିକ ବାହାରିଆସିଲା, "ଏବେ ଏହି ରାତି ଭିତରେ ପିଲା ଛୁଆ ଧରି ଲୋକେ ଯିବେ କୁଆଡ଼େ ?" "ସେକଥା ସାର୍ କେମିତି କହିବେ ?" ସିପାହୀ ଜଣକ ଉତ୍ତର ଦେଲା । "ଆଉ କେତେ ରାତି ସାହେବଙ୍କୁ ଦେଇଥିଲେ ସେ ଆମକୁ ଏ ଜାଗା ଛାଡ଼ିଦେଇଥାନ୍ତେ ପଚାରିଲନି ଟିକେ ?" ବାଷ୍ପରୁଦ୍ଧ ସ୍ୱରରେ ଆଞ୍ଚଳ ସେ କହିଲା ।

"ଚୁପ୍, ସାର ଖୁସି ଅଛନ୍ତି ବୋଲି ତ ଆଗୁଆ ଖବର ପାଇଲ," ସୀପାହୀ ଜଣକ କହିଲା ।

ପୁଲିସକୁ ଦେଖି ଛୋଟ କାଟିଆ ଭିଡ଼ଟିଏ ବି ସେହି ଅନ୍ଧାରରେ ମିତାର ଘର ଆଗରେ ଲାଗିଗଲାଣି । "ସହରର ବୁଦ୍ଧିଜୀବୀ, ସାମ୍ବାଦିକ ସମସ୍ତଙ୍କ ଚାପ, ମନ୍ଦିର ଆଗରେ ଖରାପ କାମ ଚାଲିବ ନାହିଁ । ବସ୍ତି ଉଠିଯିବ, ଗଛ ସବୁ କଟାଯିବ । ଏବେ ମନ୍ଦିର ରାସ୍ତା ଚଉଡ଼ା ହେବ । ଏଠି ବଡ଼ ବଡ଼ କମ୍ପାନୀର ଅଫିସ ଖୋଲିବ । ସେଥିପାଇଁ ସରକାରଙ୍କ ନିର୍ଦ୍ଦେଶ । ଆମ ବଡ଼ ବାବୁ ଏଥିରେ କଣ କରିବେ ?" ପୁଲିସ ସିପାହୀ ଜଣକ ତା'ର ଏତକ କହିଦେଇ ପଳାଇଗଲା । ପଛେ ପଛେ ମିତା ବି ନିଜ ଦୁଆରରେ ତାଲା ଝୁଲାଇଦେଇ ସିପାହୀର ବିପରୀତ ଦିଗରେ ମିଳାଇଗଲା । ତା'ର ମନ କ୍ରୋଧରେ ଜଳିଉଠିଲାଣି । 'ଏଠି ମନ୍ଦିର ତୋଳିବା ସେମାନଙ୍କ ପାଇଁ ତା'ହେଲେ ଭୁଲ ଥିଲା !' ମିତା ନିଜକୁ ନିଜେ ପଚାରି ଚାଲିଥିଲା । ହେଲେ ସେକଥା ତ ପଛରେ ବିଚାର ହେବ ହେଲେ ଏବେ ରାତି ଭିତରେ କିନ୍ତୁ ତା'କୁ ବହୁତ କାମ କରିବାର ଅଛି । ମିତା ଦ୍ରୁତ ଗତିରେ ବହୁତ କିଛି ଭାବିଚାଲିଥିଲା ।

ରାତି ପାହି ସକାଳ ହେବା ଆଗରୁ ମନ୍ଦିରକୁ ଯାଉଥିବା ରାସ୍ତାକୁ ଅବରୋଧ କରି ବସ୍ତିର ମହିଳାମାନେ ଧାରଣାରେ ବସିଯାଇଛନ୍ତି । ସବା ଆଗରେ ମିତା ଓ ତା'କୁ ଲାଗି ବସିଛି କାଜଲ । ଯଥା ସମୟରେ ପୁଲିସର ଗାଡ଼ି ପଛରେ ବିରାଟ ଡ୍ରୋଜର ମଧ୍ୟ ଆସ

ପହଞ୍ଚିଗଲାଣି । ମ୍ୟୁନିସିପାଲିଟିର ଅଧିକାରୀମାନେ ପହଞ୍ଚିଗଲେ । କାଜଲ ହଠାତ୍ ମିତାକୁ ଧରି କହିଲା, "ଅପା ଅପା, ଇଏ ସେହି ବାବୁଟା ଯାହା ଘରେ ମୁଁ କାମ କରୁଥିଲି ।" ଅଫିସ ଫାଇଲ ଧରି କୋର୍ଟବାବୁ ସମ୍ବୋଧନ ନେଇ ଠିଆ ହୋଇଥିବା ବ୍ୟକ୍ତିକୁ ଚାହିଁ କାଜଲ ପାଟି ରିଉଠିଲା । "ମୁଁ ମନା କରୁଥିଲି । ନିଇତି ରାତିରେ ମୋ ପାଖକୁ ଆସି ଟଣା ଭିଡ଼ା କରୁଥିଲା । ଦିନେ ସ୍ତ୍ରୀ ଦେଖି ଦେଲା ବୋଲି ମୋତେ ଘରୁ ଏମିତି ବେଜିତ୍ କରି ବାହାର କରିଦେଲା, ଅପା, ମୁଁ ମାସେ କାଳ ସେହି କଷ୍ଟରେ ଭାତ ଛୁଇଁ ନାହିଁ ।"

କାଜଲର ଆଖିରୁ ଲୁହ ନୁହେଁ ଯେମିତି ନିଆଁ ବାହାରୁଥିଲା । "ଶଳାର ଆଜି କଲର ଟାଣି ଆଣିବି ଅପା..." ଏତକ କହି ଉଠିଲା ବେଳକୁ ମିତା ଗଣ୍ଡଗୋଳ ଅନୁମାନ କରି ଚୁପ୍ କରି କାଜଲକୁ ନିଜ ପାଖରେ ବସାଇଦେଲା । ରାସ୍ତା ଅବରୋଧକୁ ହଟାଇବା ପାଇଁ ପୁଲିସ ମାଇକ୍‌ରେ ଡାକିବା ଆରମ୍ଭ କଲା, "ସରକାରୀ ନିର୍ଦ୍ଦେଶ ଆସିଛି । ମନ୍ଦିର ସାମ୍ନାରେ ଏପରି ବସ୍ତି ରହିବ ନାହିଁ । ଦୟାକରି ଆଇନକୁ ହାତକୁ ନ ନେଇ ନିଜ ନିଜ ଘର ଖାଲି କରିଦେବାରେ ଧ୍ୟାନ ଦିଅନ୍ତୁ । ଏହା ସରକାରୀ ନିର୍ଦ୍ଦେଶ ।" ମାଇକ୍ ଧରି ଡାକୁ ଥିବା ଲୋକଟି ପାଖରେ ସେହି ଥାନା ଅଧିକାରୀ ଜଣକ ନିର୍ଲିପ୍ତ ଭାବରେ ନିଜର ଡ୍ୟୁଟି କରୁଥାନ୍ତି ଓ କୋର୍ଟବାବୁ ଜଣକ ଅଞ୍ଚଳର ମ୍ୟାପ ଧରି ପୁଲିସବାବୁ ଓ ଡ୍ରୋଜର ଡ୍ରାଇଭରକୁ ବୁଝାଇଚାଲିଥାନ୍ତି ।

ମିତା ଓରଫ୍ ଆଞ୍ଚଲ ନିଜ ସ୍ଥାନରୁ ଉଠି ବିଜୁଳି ବେଗରେ ସେହି ସିପାହୀ ହାତରୁ ମାଇକ୍ ଟାଣି ନେଲା । କିଛି ସମୟ ପାଇଁ ସମସ୍ତ ଅଞ୍ଚଳ ଯେମିତି ସ୍ତବ୍ଧ ପାଲଟିଗଲା । ମିତା କହିବା ଆରମ୍ଭ କଲା, "କିଏ କହିଲା ମନ୍ଦିରର ଭଗବାନ କେବଳ ତୁମର ? ଆମେ ଏ ମନ୍ଦିର ତୋଳିଛୁ, ମନ୍ଦିରକୁ ପ୍ରତିଦିନ ଫୁଲ, ଦୀପ, ଫଳ ଦେଇ ଭଗବାନକୁ ବଞ୍ଚେଇ ରଖିଛୁ ।" ସାମ୍ବାଦିକଙ୍କ କ୍ୟାମେରା ସବୁ ମିତା ଆଡ଼କୁ ଘୂରିବାକୁ ଲାଗିଲା । "କିଏ କହିଲା ଆମେ ଖରାପ । ଆମେ ଧନ୍ଦା କରୁଛୁ ତ ? ଆରେ, ଆମେ ଧନ୍ଦା କରୁଛୁ ବୋଲି ତ ତୁମ ପରିବାର ଭିତରେ ତୁମେ ଶାନ୍ତିରେ ଅଛ ।"

ମିତାର ମନ ଭିତରେ ଆଜି ପର୍ଯ୍ୟନ୍ତ ନିଜର କାମକୁ ନେଇ ଯେତେ ସବୁ ଅପବାଦ ସେ ସମାଜ ମଧ୍ୟରୁ ଶୁଣି ଚାଲିଥିଲା ଆଜି ସେସବୁର ଉତ୍ତର ଦେବା ତା'ପାଇଁ ଥିଲା ସୁଯୋଗ । "କିଏ କହିଲା ଆମେ ଅପରାଧୀ, ଆମେ କଳଙ୍କ ? ଆମେ ଯଦି ଅପରାଧୀ ତେବେ ଶତ ସହସ୍ର ଗୋପନାରୀଙ୍କ ବସ୍ତ୍ର ହରଣ କରିଥିବା ଜଣକ ଭଗବାନ କେମିତି ହୋଇଗଲା ? ସ୍କୁଲ କଲେଜସବୁ ସେମାନଙ୍କ ଜନ୍ମଦିନରେ ଛୁଟି ଦେଇ ତୁମ ସରକାର ପିଲାଙ୍କୁ କି ଶିକ୍ଷା ଦେବାକୁ ଚାହୁଁଛି କହୁ ?" ସରକାରୀ ଅଧିକାରୀମାନେ ଏଥିରେ ସ୍ତବ୍ଧ ପାଲଟିଗଲେ । ମିତାକୁ ଘେରି ରହିଥିଲେ ଉପସ୍ଥିତ ବସ୍ତିବାସିନ୍ଦା । ପୁଲିସ ଚେଷ୍ଟା କରି ମଧ୍ୟ ତା ହାତରୁ ମାଇକ୍ ଛଡ଼ାଇ ପାରୁନଥିଲା । ହେଲେ ସେଭଳି ଉଦ୍ୟମରେ ଉତ୍କ୍ଷିପ୍ତ ମିତା ପୁଣି ଗର୍ଜିଉଠିଲା, "ଏବେ ମୁଖା ଖୋଲିଲେ କୋର୍ଟବାବୁ ଠାରୁ ପୁଲିସବାବୁ ପର୍ଯ୍ୟନ୍ତ, ସାମ୍ବାଦିକଙ୍କଠାରୁ ନେତାଙ୍କ ପର୍ଯ୍ୟନ୍ତ

ସମସ୍ତଙ୍କ ମୁଖା ଖୋଲିଯିବ । ପ୍ରତ୍ୟେକ ଦିନ ଆମ ପାଖରେ ଶୋଉଥିବା ତିନି ଚାରି ଜଣ ମରଦ ତ ଏହି ସହରର ଯେଉଁମାନଙ୍କୁ ପ୍ରତ୍ୟେକଥର ସୁଖ ଦେଇ ଆମେ ବିଦା କରିଛୁ । ସେମାନେ ଆମକୁ ଭିଣିଛନ୍ତି, କାମୁଡ଼ିଛନ୍ତି, ଆମକୁ ଖଣ୍ଡିଆ କରିଦେଇଛନ୍ତି । ବଦଳରେ କିଛି ଟଙ୍କା ଦେଇ ପୁଣି ଭଦ୍ର ସମାଜ ଆଡ଼କୁ ଚାଲିଯାଇଛନ୍ତି । ଆମେ ବି ସେସବୁକୁ ଖାତିର କରିନାହୁଁ । ଆମ ବ୍ୟବସାୟରେ ସେମାନେ ଆମର ଗରାଖ, ଆମ ପାଇଁ ସେମାନେ ଭଗବାନ । ଆମେ କାହାରିକୁ ଜାତି କି ଧର୍ମ, ଗରିବ କି ଧନୀରେ ବାଣ୍ଟିଦେଇନାହୁଁ । କେବେ ଡ୍ୟାମ ନାମରେ ତ ପୁଣି କେବେ ରାସ୍ତାନାମରେ ଓ ଆଜି ପୁଣି ତୁମେ ଭଗବାନ ନାମରେ ଆମକୁ ହଟେଇ ଏଠି ବଡ଼ ବଡ଼ କମ୍ପାନୀର ଅଫିସ ଖୋଲିବ, ଆମକୁ ସେଥିପାଇଁ ବଳି ଚଢ଼େଇବ ? ଏଇଟା ଆମ ଜୀବନ ଥିବା ପର୍ଯ୍ୟନ୍ତ ହୋଇପାରିବ ନାହିଁ ।" ଏହା କହି ମିତା ମାଇକ୍‌ଟିକୁ ପୁଲିସକୁ ଦେଇଦେବା ପାଇଁ କାଜଲ ହାତକୁ ବଢ଼େଇ ଦେଇ ଲଥ୍‌କରି ରାସ୍ତାରେ ବସିପଡ଼ିଲା ।

ମିତା ପଛରେ ସେତେବେଳକୁ ପାଖାପାଖି ବସ୍ତିର ପିଲା, ବୁଢ଼ା, ସ୍ତ୍ରୀଲୋକ ଓ ଛୁଆ ସମସ୍ତେ ଆସି ଏକାଠି ହୋଇଗଲେଣି । ସେମାନଙ୍କ ସହିତ ଛୋଟ ଛୋଟ ଦୋକାନୀ, ରାସ୍ତାକଡ଼ର ଠେଲାଗାଡ଼ିବାଲା, ବେପାର କରୁଥିବା ଲୋକ, ପ୍ରକୃତିକୁ ଭଲ ପାଉଥିବା ଓ ମଣିଷର ଅଧିକାର ପାଇଁ ଲଢ଼େଇ କରୁଥିବା ମଣିଷମାନେ ସମସ୍ତେ ଠିଆ ହୋଇଯାଇଥିଲେ । ସମସ୍ତେ ସ୍ଲୋଗାନ ଦେବା ଆରମ୍ଭ କଲେଣି, "ମରିବୁ ପଛେ ଡରିବୁ ନାହିଁ ଆମ ବସ୍ତିକୁ ଆମେ ଛାଡ଼ିବୁ ନାହିଁ ।"

ମିତାକୁ ବହୁତ ଦିନ ପରେ ଅନୁଭବ ହେଲା, ସେ ପୁଣି ଥରେ ତା' ନିଜର ଠିକଣା ପାଇଛି । ଏହାକୁ ଏବେ ସେ ସ୍ଥାୟୀ କରିନେବ ।



# ରାତୁ ମାଝୀ

ଗ୍ରାମ: କୁଚେଇପଦର, ପୋଷ୍ଟ: କୁଚେଇପଦର, ବ୍ଲକ: କାଶୀପୁର, ଜିଲ୍ଲା: ରାୟଗଡ଼ା, ହେଲେ ଆପଣ ଖୋଜୁଛନ୍ତି କାହାକୁ ? ଆପଣ କ'ଣ ଖୋଜୁଛନ୍ତି ଗୁରୁନାଥ ମାଝୀ, ପରମେଶ୍ୱର ମାଝୀ, କର୍ଣ୍ଣ ନାୟକ ଏମାନଙ୍କୁ । ହଁ ଏଇଟା ଟିକେ ବଡ଼ ଗାଁ । ଏଠି କନ୍ଧ ଓ ଡମଙ୍କ ମିଳିତ ରାଜୁତି । ଡମ ଟିକେ କମ୍, କନ୍ଧ ଟିକେ ଅଧିକ । ଆପଣ କ'ଣ ଖୋଜୁଛନ୍ତି ମିତ୍ରା ମାଝୀ, ଗୋବରୀ ସାଉନ୍ତା, ଝାଣ୍ଟୁ ନାୟକ, ଉଲ୍‌ମେ ମାଝୀକୁ? ଏମାନେ ତ କେବେ ଠୁ ଡୁମା ହୋଇଗଲେଣି । ତେବେ କାହାକୁ ? ଆପଣ କ'ଣ ଖୋଜୁଛନ୍ତି ସେହି ରାତୁକୁ ?

ହଁ ଏହି ଗାଁର ରାତୁ - ରାତୁ ମାଝୀ, କନ୍ଧ ମଣିଷଟିଏ । ସଲପ ଗଛ ତଳେ ବଂଶୀ ଫୁଙ୍କି ତାର ଉପସ୍ଥିତିକୁ ସେ ସମସ୍ତଙ୍କୁ ଜଣାଇଦିଏ । ସଦାବେଳେ ତା'ର ବଗିଚାରେ ଭିଡ଼ - ନୀତି ସଞ୍ଜ ସକାଳେ ସଲପ ପିଇ ଆସୁଥିବେ । ସେମାନଙ୍କ ଫେରନ୍ତି ନିଶା ସେମାନଙ୍କ ଉଚ୍ଛାଙ୍ଗ ରାଗରୁ ବେଶ ଜଣାପଡ଼େ ।

ପୁଣି ରାତୁ ପାଖକୁ କେହି କେହି ଆସନ୍ତି ତା'ଠାରୁ ଚେରମୂଳି ଔଷଧ ନେବା ପାଇଁ । ରାତୁ ଏ ଅଞ୍ଚଳର ଜଣାଶୁଣା- ରାତୁ ଡାକ୍ତର । ପେଟ ରୋଗ ଭଲ କରିବା ପାଇଁ ଲୋକେ ତା ପାଖକୁ ଆସନ୍ତି । ଔଷଧ ନେବା ଲୋକ ସାଥିରେ ମହୁଲି ବୋତଲଟେ କିନ୍ତୁ ଆଣିବାକୁ ଭୁଲନ୍ତି ନାହିଁ । ରାତୁ ପ୍ରଥମେ ମହୁଲି ମଦ ସହିତ ନିଜେ ଦେଉଥିବା ଔଷଧରୁ ଟିକେ ଖାଏ ଯେମିତି ଜାଣିବ ଯେ ସେ ଅଲଗା କିଛି ଦେଉନାହିଁ । ତାପରେ ସେ ବେମାରୀ ଲୋକକୁ ତା ସାମ୍ନାରେ ଔଷଧ ଖାଇବାକୁ ଦିଏ ।

ବେଳେବେଳେ ସଲପ ସହିତ ମହୁଲି ମିଶିଯିବା ହେତୁ ରାତୁକୁ ଝାଡ଼ା ହୁଏ । ରାତୁର ଝାଡ଼ା ହେଲେ ରାତୁ ଜାଣେ ତା'ଔଷଧ କାମ କରିବ ନାହିଁ । ବେଳେବେଳେ ସରକାରୀ ଔଷଧ ଖୋଜେ । ମନଦୁଃଖ କରେ । ନିଜ ଗାଁର ଲୋକେ ରାତୁର କରାମତି ଜାଣନ୍ତି । ତେଣୁ ରାତୁ ଉପରେ ତାଙ୍କର ବିଶ୍ୱାସ କମ୍ । ହେଲେ ରାତୁର ସେଥିରେ ପରୱା ନାହିଁ । କାରଣ ସେ ଏଥିରେ ପେଟ ପୋଷୁନାହିଁ । ତା'ର ବଗିଚାରେ ସେ କାମରେ ଲାଗିଥାଏ । ଲୋକ ଦେଖି ଔଷଧ ଦିଏ ।

କୁଚେଇପଦର ଗାଁର ସମସ୍ତେ ରାତୁ ପରି, ସନ୍ଧ୍ୟା ପର୍ଯ୍ୟନ୍ତ ନିଜ ନିଜର ବଗିଚାରେ ଲାଗିଥିବେ । ଛୋଟିଆ ବଗିଚାଟିରେ କେଉଁଠି ହଳଦୀ, କେଉଁଠି ସିମଳିକନ୍ଦା, କେଉଁଠି କାନ୍ଦୁଲ, କେଉଁଠି ପରିବା ଟିକେ କିଏ କିଏ ଲଗାଇଥିବେ । ବଗିଚାର ଲାଡ଼ିରେ ଗାଈ, ଗୋରୁ, ଛେଳି, କୁକୁଡ଼ା ବନ୍ଧା । ତା'ଙ୍କୁ ଚରାଇବା କାମ ପିଲା ବୁଢ଼ା ସମସ୍ତଙ୍କର । ସନ୍ଧ୍ୟା ହେଲେ ରାତୁ ପରି ବୁଢ଼ାମାନେ ରହିଯିବେ ବଗିଚାରେ । ଘର ଲୋକେ ଗାଁକୁ ଆସିବେ । ଘରେ ଚୁଲି ଲଗାଇବେ । ସକାଳ ହେଲେ ପୁଣି ଚାଲିଯିବେ ବଗିଚାକୁ ।

ଆଉ ବର୍ଷା ଦିନ ଆସିଗଲେ ସମସ୍ତେ ଯେମିତି ଏକା ସାଙ୍ଗରେ ଲାଗିଯିବେ କାମରେ । ବର୍ଷା ଚାରିମାସର ଭିଡ଼ ଭିତରେ ଲୋକେ ସବୁ ହସଖୁସି ଭୁଲିଯା'ନ୍ତି । କାମ ସରେ ନାହିଁ, ବର୍ଷା ସରିଯାଏ । ପ୍ରତିବର୍ଷ ସେଥିରେ ପୁଣି ଲୋକଙ୍କୁ ଝାଡ଼ା ବେମାର ଧରେ । ଝାଡା ବେମାର ହେଲେ ବିଶ୍ୱାସ ହେଉ ନ ହେଉ ଲୋକେ ରାତୁର ଦୁଆରେ ଭିଡ଼ ଲଗାନ୍ତି । ଯେମିତି ଆଣ୍ଠୁବଥା ହେଲେ ଲୋକେ କୁସକୁ ଖୋଜନ୍ତି । ଯେମିତି ପିଲା, ଛୁଆ ବେମାର ହେଲେ ଲୋକେ ଆଦାୟୀମା'ଙ୍କୁ ଖୋଜନ୍ତି, ସେମିତି ଝାଡ଼ା ହେଲେ ଲୋକେ ରାତୁକୁ ଖୋଜନ୍ତି ।

ଦିନବେଳା ନିଜର ଚାଷକାମ ପୁଣି ସନ୍ଧ୍ୟା ହେଲେ ବେମାରୀ ଲୋକଙ୍କୁ ଔଷଧ ଦେବା, ପୁଣି ମଝିରେ ମଝିରେ ଦୂର ଜଙ୍ଗଲକୁ ଯାଇ ଔଷଧ ଆଣିବା, ଏମିତି ବେଳେ ବେଳେ ରାତୁ ନିଜର ଚାଷ କାମ ମଧ୍ୟ କରିପାରେ ନାହିଁ । ବର୍ଷା ସରିଆସେ, ଧାନ ଗଛରେ ଖ୍ୱର ଧରେ ମାତ୍ର ଘାସ ବଛା ସରେ ନାହିଁ । ରାତୁର ସ୍ତ୍ରୀ ସୁଲମେ ଉପରେ ଭିଡ଼ ପଡ଼େ । ହେଲେ ସେ କିଛି କହେ ନାହିଁ ।

ରାତୁ ସମୟ ଦେଖି ବଂଶୀରେ ସ୍ୱର ଦିଏ । ଟୋକାଳିଆ ଧୂନ ତାକୁ ବହୁତ ଭଲ ଲାଗେ । ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କ ଡୁଣକାକୁ (ଗୀତ) ସେ ଉଚ୍ଛ୍ୱାସ ଦେଇ ଫୁଙ୍କେ । ଦାନ୍ତ ସନ୍ଧି କ୍ରମଶଃ ଫାଙ୍କା ହୋଇଯିବା ହେତୁ ବେଳେବେଳେ ବେସୁରା ଲାଗେ । ବଂଶୀ ଫୁଙ୍କିଲେ ସେ ସୁଲମେକୁ ମନେପକାଏ । ସୁଲମେକୁ ପ୍ରଥମେ କେମିତି ସାଙ୍ଗଙ୍କ ସହିତ ଗୀତ ଗାଇ ଗାଇ ଆଣିଥିଲା ସେ କଥା ସେ ସମସ୍ତଙ୍କୁ କହେ ।

ସୁଲମେ ସହିତ ରାତୁର ପ୍ରଥମ ଦେଖାହୁଏ ଡଙ୍ଗାସିଲ ହାଟରେ । ସେଦିନ ରାତୁକୁ ଭଲମେ ଲାଗିଥିଲା ସୁଲମେ । ତା'ର ଗାଁ ଆଉ ଗୋତ୍ର ପଚାରି ବୁଝିଥିଲା ଚିହ୍ନା ପିଲାଙ୍କୁ ଦେଖି । କନ୍ଧ ଜାତିରେ ଗୋତ୍ର ସମାନ ହେଲେ ଅସୁବିଧା, ଭାଇ ଭଉଣୀ ହେବେ । ସୁଲମେର ଗୋତ୍ର ଥିଲା ଅଲଗା ପୁଣି ଗାଁ ଥିଲା ବାରିହାଗୁଡ଼ା । ହାଟସାରି ଗାଁ ଧାଙ୍ଗଡ଼ିଙ୍କ ସହିତ ସୁଲମେ ହାଟରୁ ଫେରିଲାବେଳେ ସେ ତା'ର ପଛେ ପଛେ ଆସିଥିଲା । ତା'କୁ ସେ ଆଉ ଟିକେ ଦେଖୁଥିଲା, ଆଉ ଟିକେ ଦେଖୁଥିଲା ଠିକ୍ ଡଙ୍ଗର ସନ୍ଧିରେ ସୁଲମେ ଲୁଚିଯିବା ଯାଏଁ ।

ଏହାପରେ ମିଛରେ ମିଛରେ ରାତୁ ଯାଏ ବାରିହାଗୁଡ଼ା । ଯାମା, ଡାଲି, ଲାଛି କେତେ ମିତ ସେ ଗାଁରେ ବାହାରିଲେ । ସେମାନେ ସୁଲମେର ମିତ ସହିତ ସଂପର୍କ କରି ତା' ପାଖକୁ

ରାତୁର କଥା ପହଞ୍ଚାଇ ଦେଲେ । ଏଠି ପ୍ରେମ କରିବାରେ ବାଧା ନାହିଁ । ସହଯୋଗ ପାଇଁ ସମସ୍ତେ ଆଗ୍ରହୀ । ସମସ୍ତେ ଜାଣନ୍ତି ବୟସ ଆସିଲେ ପ୍ରେମ ଆସେ । ପ୍ରେମ ଆସିଲେ ମନ ଦେବା ନେବା ହୁଏ । ଏଠି ପୁରୁଷ ଜୋର କରିପାରେ ନାହିଁ, ପୁରୁଷ ଭଲପାଇବାର ପରୀକ୍ଷା ଦିଏ ।

ସୁଲମେ ପ୍ରଥମେ ସବୁ ଜାଣି ମଧ୍ୟ ରାଜି ହୋଇନଥିଲା । କୁଚେଇପଦର ବଡ଼ଗାଁ, ବାରିହାଗୁଡ଼ା ଛୋଟ ଗାଁ । ରାତୁ ଘର ଲୋକ ଯଦି ହୀନ କଲେ ? କିନ୍ତୁ ରାତୁ ମଧ୍ୟ ଛାଡ଼ିବାର ନାହିଁ । ରାତୁ ସୁଲମେର ଘରେ ଦୁଇବର୍ଷ ଖଟିଲା । ବେଶି କାମ କରିଦେବ । ଦିନ ସାରା କାମକଲା । ସଂଧ୍ୟା ହେଲେ ଧାଙ୍ଗଡ଼ି ବସାରେ ଡୁଣ୍ଡୁକା ଗାଇଲା,

"ଇଚି ଇଚି ସୁରୁଡି ବପିଅ କୁମୁଡ଼ା ବଣ୍ଡତା ଡ଼ିଆନେ... ।"

ଡୁଣ୍ଡୁକାରେ କଥା କଟା କଟି ହୁଏ । କେହି କାହାକୁ ଛାଡ଼ିବାର ନାହିଁ । ଏମିତି ଏମିତି ରାତି ବଢ଼େ । ଆଖିକୁ ନିଦ ଆସେ । ସକାଳୁ ପୁଣି କାମ । ରାତୁର କାମ ଦେଖି ସୁଲମେର ବାପା ମଧ୍ୟ ଭାରି ଖୁସି । ଜୁଆଇଁ ତା'ର କାମିକାଟା – ନିଜର ପୁଅ ରେଲିକୁ ବେଶି ସାହାଯ୍ୟ ହେବ ।

ରାତୁ ରେଲି ସହିତ ବେଶୀ କାମ କରିଦିଏ । ଡଙ୍ଗରରୁ ବୁଦା ମାରିଲା ବେଳେ, ପଦା ଜମିରେ ଘାସ ବାଛିଲା ବେଳେ ବା ମକାବାଡରେ ପାଣି ମଡ଼ାଇଲା ବେଳେ କିନ୍ତୁ ରାତୁ ବଡ ପାଟିରେ ରେଲିକୁ ତା'ର ଗାଁର କଥା କହେ ଯେମିତି ପାଖରେ କାମ କଲାବେଳେ ସୁଲମେ ଶୁଣିପାରୁଥିବ । ବେଳେ ବେଳେ ସୁଲମେ ତା'ର ଅଜାଣତରେ କଥାରେ ପାଳି ଧରେ । ରାତୁ ଖୁସି ହୁଏ । ସୁଲମେ ଲାଜେଇ ଯାଏ ।

ଏମିତି ଦେଖାଦେଖିରେ ଦିନେ ବେଳ ଦେଖି ରାତୁ ପଚାରିଥିଲା ସୁଲମେକୁ "ଏଥର ଯିବୁ ମୋ ସହିତ ?" ସୁଲମେ "ହଁ" ଭରିଥିଲା । ରାତୁ କୁଆଡ଼େ ସେହିବର୍ଷ ଚଇତିର ରାତିରେ ନିଜର ଗାଁ ସାଙ୍ଗମାନଙ୍କ ସହିତ ସୁଲମେକୁ ଉଦୁଲିଆ ନେଇ ଆସିଥିଲା । ଏହାପରେ ହଳଦୀ ଗାଧୁଆ, କଙ୍କଡ଼ା ଧରା ଓ କୁଟୁମ୍ବ ଭୋଜି । ମାତ୍ର ସୁଲମେର ମନ ବେଶୀ ଦିନ ରାତୁର ଘରେ ମାନିନଥିଲା । ରାତୁର ମା'ଟିକେ ଖରଖରିଟା । ସୁଲମେ ଟିକେ ମୋଟି ବୋଲି ମା' ତା'ର ପ୍ରଥମ ଦିନରୁ ମୁହଁ ବୁଲାଇ ଦେଇଛି – 'ତାର ବୁଆରୀଟା କାମ କରିପାରିବ ନାହିଁ ।'

ମଝିରେ ମଝିରେ ସୁଲମେ ରାଗିଗଲେ ଲୁଚିକରି ଚାଲିଆସେ ନିଜ ଗାଁକୁ । ତା' ପଛେ ପଛେ ଆସେ ରାତୁ । ରାତୁ ଜାଣେ ସୁଲମେ ରାଗି କରି ଆସିଛି । ବେଶ କିଛି ଦିନ ଲାଗିଯାଏ ମନେଇବାକୁ । ପୁଣି ଦୁଇଲୋକ ଆଗପଛହୋଇ ଗାଁକୁ ଚାଲିଚାଲି ଫେରନ୍ତି । ଖୁସିରେ ରାତୁ ସିଟି ମାରେ । ସୁଲମେ ପଛରେ ହସୁଥାଏ । ଯେବେ ସବା ଜନ୍ମ ହେଲା, ତା' ପରଠାରୁ ସୁଲମେ ଆଉ କେବେ ରାଗିକରି ବାରିହାଗୁଡ଼ା ଯାଇନାହିଁ । ରହିଯାଇଛି ପୁରା କୁଚେଇପଦରରେ ।

ରାତୁର ପ୍ରେମ କାହାଣୀ ଏ ଅଞ୍ଚଳରେ ସମସ୍ତେ ଜାଣନ୍ତି । ବଂଶୀର ଧୂନରେ କେବେ କେମିତି ସେ ଚଇତିର ଗୀତ, ମାଣ୍ଡିଆ ରାଣୀ ପରବ ଗୀତ ଯୋଡ଼ିଦିଏ । ସଲପ ଟିକେ ପକାଇଲେ ତଣ୍ଟି ତା'ର ଓଦା ରହେ । ପାଟିରୁ ଟିକେ ଅଧିକ ହାଓ୍ୱା ବାହାରେ । ବଂଶୀ ଶୁଣୁଥିବା ଲୋକକୁ ମଝିରେ ମଝିରେ ରାତୁ ତା'ର ପ୍ରେମ କାହାଣୀ କହିଥାଏ ।

ଦିନକର କଥା । ରାତୁ ଶୁଣିଲା ଗାଁ ମୁଣ୍ଡରେ ମିଟିଂ ଚାଲିଛି । ବାହାରୁ ବେଶ କିଛି ଲୋକ ଆସିଛନ୍ତି । ଦିନବେଳା ମିଟିଂ । ଅନ୍ୟଦିନେ ରାତିବେଳା ଗାଁରେ ନ୍ୟାୟ ହୁଏ । ମିଟିଂ ବସେ । ସୁଲମେ ସେ ମିଟିଂକୁ ଯାଏ । ଗାଁର ନିଷ୍ପତ୍ତିରେ ଭାଗ ନିଏ । ସକାଳ ହେଲେ ବାଡ଼ରେ ଆସି ନିଷ୍ପତ୍ତି କଥା ରାତୁକୁ କୁହେ । ଏଥର ଦିନର ମିଟିଂ ଶୁଣି ରାତୁ ନିଜେ ମାଡ଼ିଗଲା ମିଟିଂ ଯାଗାକୁ ।

ଗାଁର ସବୁଲୋକ ରୁଣ୍ଡିଛନ୍ତି । କମ୍ପାନୀ ଗୋଟେ ଆସିବ । ତା' ପାଇଁ ଜମି ମାଗୁଛି । କିଛି ଜମି ନେବ । ଫ୍ୟାକ୍ଟରୀ ବସାଇବ । ମିଟିଂ ମଝିରେ ଅଂଚଳର ନୂଆ ଏମଏଲଏ ବସିଛି । ସେମାନେ ସମସ୍ତେ ବୋତଲରୁ ପାଣି ପିଉଛନ୍ତି, କଦଳୀ ବିସ୍କୁଟ ଖାଉଛନ୍ତି, ବାକି ଲୋକଙ୍କୁ ଦେଉଛନ୍ତି, ଜମିପାଇଁ ସର୍ଭେ ହେବ ବୋଲି ଆଲୋଚନା କରୁଛନ୍ତି ।

ଶୁଖିଲା ପତ୍ରରେ ନିଆଁ ଲାଗିଲେ ହୁହୁ ହୋଇ ଜଳିଲା ପରି ରାତୁ ରାଗରେ ଜଳିଗଲା । ସେହି ମିଟିଂ ମଝିରେ ଲୋକଙ୍କୁ ଗାଳି କରିବା ଆରମ୍ଭ କରିଦେଲା । "ଏମାନେ ବାହାର ଲୋକ । ଆଜି ଟିକେ ମାଗୁଛନ୍ତି । କାଲି ପୁରା ଅଞ୍ଚଳକୁ ମାଡ଼ି ବସିବେ । କୁଆଡ଼େ ଯିବ ତୁମେମାନେ ? ଆମେ ଜମି ଦେବା ନାହିଁ ।" ହେଲେ ଗ୍ରାମବାସୀ ସେଦିନ ଚୁପ୍ ରହିଲେ । ଅଞ୍ଚଳର ଉନ୍ନତି ହେବ ବୋଲି ଏମଏଲଏ ଆଶ୍ୱାସନା ଦେଲା ।

ରାତୁର ମନ ମାନିଲା ନାହିଁ । ତା'ର ମନେ ପଡିଲା ବୁଢ଼ାମାନଙ୍କ ଠାରୁ ଶୁଣିଥିବା କଥା । ସେମାନେ ପୂର୍ବେ ନିଜେ ଜଙ୍ଗଲ କାଟି ଚାଷ କରୁଥିଲେ । କାଶୀପୁର ରଜାଘର ଲୋକ ନିଜର ବଳ ଦେଖାଇ ବାନ୍ଧି ନେଇଗଲେ ଆଦିବାସୀଙ୍କୁ । ରଜା ପାଖରେ ଜମି ବନ୍ଧା ରଖି ସେମାନେ ମୁକୁଳିଲେ । ତାପରେ ଗୋତି ଖଟିଲେ ରଜା ପାଖରେ । ରଜାର ଖମାର ଥିଲା ଶିରିଗୁଡ଼ାରେ । କନ୍ଧ ପରଜା ସମସ୍ତେ ରଜା ଘର ଜମିରେ କାମ କଲାପରେ ପୁଣି ନିଜ ଜମିରେ କାମ କରୁଥିଲେ । ହଳ କରିବା, ମଞ୍ଜି ବୁଣିବା, ଘାସ ବାଛିବା, ଧାନ କି ମାଣ୍ଡିଆ ହେଲେ କାଟିବା ସବୁ କାମ ଆଗ ରଜା ଘରର, ତାପରେ ନିଜର । ଏହି ଗୋତି ଖଟୁଥିବା ଆଦିବାସୀଙ୍କୁ ନେଇ ପେରିଙ୍ଗିଣି, କାପୁଗୁଡ଼ା, ଗୁଗୁପୁଟ ଗାଁ ସବୁ ବସିଥିଲା । କାହିଁ କେତେ ବର୍ଷ ପରେ ଗାନ୍ଧୀ ଆସିକରି ସେମାନଙ୍କୁ ମୁକୁଳାଇଲା ।

ଗାଁ ମାଷ୍ଟ୍ର କେଉଁଠୁ ଶୁଣିକରି ଆସି କହୁଥିଲା, ଏ କଂପାନୀ କୁଆଡ଼େ ଗାନ୍ଧୀକୁ ମଧ ଦେଶ ସ୍ୱାଧୀନତା ପାଇଁ ଟଙ୍କା ଦେଇଥିଲା । ଗାନ୍ଧୀ ମରିଗଲା ପରେ କୁଆଡ଼େ ଏ କଂପାନୀ ଇଂରେଜବାଲାଙ୍କ ସହିତ ମିଶିଗଲା । ଏମାନେ ବ୍ୟବସାୟୀ ଲୋକ । ନିଜର ଲାଭ ପାଇଁ

ଆସିବେ । ଲାଭ ଯୁଆଡ଼େ ଦେଖିବେ ପଳାଇବେ – ଠିକ୍ ଡଙ୍ଗାସିଲ ଶୁଣ୍ଡି ଭଳି । କାହିଁ କେଉଁଆଡୁ କେତେ ବର୍ଷ ହେଲାଣି ସେ ଶୁଣ୍ଡି ଆସିଥିଲା ଡଙ୍ଗାସିଲକୁ । ପ୍ରତି ରବିବାର ଦିନ ମଦ ପିଇବାବାଲାଙ୍କୁ ସେ ପ୍ରଥମ ବୋତଲଟା ଖାଣ୍ଟି ମହୁଲି ଧରେଇ ଦେବ । ତା'ପରେ ନିଶା ଧରିଗଲେ ଖାଲି ପାଣି ଗୁଡ଼ାକ ଢାଳି ଦେବ । ପାଖରୁ ପିଇସା ସରିଯିବ ଜଣାପଡ଼ିବ ନାହିଁ । ଡଙ୍ଗାସିଲରେ ଏବେ ସରକାରୀ ଭାଟି ଖୋଲିବା ପରେ ସେ ଅନ୍ୟ ଗାଁକୁ ପଳାଇଛି ।

ରାତୁ ଆସି ସୁଲମେକୁ ସବୁ କଥା କହିଲା, ସବାକୁ ମଧ୍ୟ । ସବା ତା'ର ବାପା ଉପରେ ରାଗିଗଲା । "କମ୍ପାନୀ ଆସିଲେ ଭଲ ହେବ । ସେ ମଧ୍ୟ କାମ ପାଇବ ।" ସବା ତାର ଗୋରଖପୁର ସ୍କୁଲରେ ରହି ସାତଶ୍ରେଣୀ ଯାଏ ପଢ଼ିଲା । ତାପରେ ଆଉ ପଢ଼ିଲା ନାହିଁ । ମାଷ୍ଟ୍ରର ମାଡ଼ ସମ୍ଭାଳି ପାରିଲା ନାହିଁ । ପଳେଇ ଆସିଲା । ଜେକେ ପେପର ମିଲ୍‌ରେ ଏବେ ଟ୍ରକ ଚଳାଉଛି । ରାୟଗଡ଼ାରେ ସାଙ୍ଗ ହୋଇ ସେ ରହୁଛି ।

ସୁଲମେ ସବୁ ଶୁଣିଲା, ବୁଝିଲା ପୁଣି ବୁଝିପାରିଲା ନାହିଁ । ସବା ଗାଁରେ ଏଥର ରହିଗଲେ କିପରି ହୁଅନ୍ତା । ମାତ୍ର ଯଦି ଅଞ୍ଚଳର ଜମି କମ୍ପାନୀ ନେଇଯିବ ତେବେ ସବା ଗାଁରେ ରହିଲେ କେତେ ନରହିଲେ କେତେ । ଅଞ୍ଚଳଟା ପୂରା ବୁଡ଼ିଯିବ ।

କମ୍ପାନୀବାଲା ଏଥର ଜମି ସର୍ଭେ ପାଇଁ ଆସିଲେ । ମାଗିଥିଲେ କମ, ମାଡ଼ିଲେ ଅଧିକ । ଏଥର ଲୋକଙ୍କୁ ହେଜ ହେଲା । ସମସ୍ତେ ଟାଙ୍ଗି, ଟାଙ୍ଗିଆ, ଠେଙ୍ଗା, ବାଡ଼ି, ବର୍ଚ୍ଛା ଧରି କମ୍ପାନୀଲୋକଙ୍କୁ ଗୋଡ଼େଇଲେ । "ଶଳାଙ୍କୁ ଧର, ମାର ମାର, ଖେଦ ଖେଦ । ବାଘ ଖାଉ ଏମାନଙ୍କୁ । ଶଳେ ଆମ ଜମି ନେବାକୁ ଆସିଛନ୍ତି ।" ଏଥିର ରାତୁ ଆଗରେ । ଏ ଭିଡ଼ ଦେଖି ରାତୁ ଭାରି ଖୁସି । ସୁଲମେ ମଧ୍ୟ ଇଲା (ଦା') ଧରି ଦୌଡ଼ିଲା । କମ୍ପାନୀବାଲା ପଳେଇଗଲେ ।

ଏଥର ଅଞ୍ଚଳରେ ଚାଲିଲା ସଂଗ୍ରାମ । ଲୋକେ କମ୍ପାନୀର କ୍ୟାମ୍ପ ପୋଡ଼ିଦେଲେ । ସର୍ଭେବାଲାଙ୍କୁ ମାଡ଼ ମାରିଲେ । ରାସ୍ତାରେ କମ୍ପାନୀର ଗାଡ଼ିକୁ ବନ୍ଦ କଲେ । କମ୍ପାନୀ ଅଞ୍ଚଳ ଛାଡି ଚାଲିଯିବା ପାଇଁ ର୍‍ୟାଲି କଲେ । ଏଥିର ରାତୁ ଆଗରେ । ପୋଲିସ ଆସି ରାତୁକୁ ଖୋଜିଲା । କିଏ କୁଆଡ଼େ ଲୁଚିଗଲେ । ସେହି ଦିନୁ ରାତୁ ହାଟ ଗଲାନାହିଁ, ବଜାର ଗଲା ନାହିଁ । ସରକାରୀ ରାସ୍ତାରେ ଚାଲିଲା ନାହିଁ ।

ଚଇତି ଆସିବ । ସମସ୍ତଙ୍କ ଘରେ ଫସଲ ଭରିଯିବ । ରାତୁ ସ୍ୱପ୍ନ ଦେଖେ । ସେ ବର୍ଷ ବାଡ଼ରେ ହଳଦୀ ଲଗେଇଛି । ବେଶୀ ହଳଦୀ ହୋଇଛି । ଏଥିର ସେ ଦୁଇପଟ ବଳଦ କିଣିବ । ଆଗ ସାଲକୁ କାନ୍ଦୁଲ ଲଗାଇବ । ସବା ଧାଙ୍ଗଡ଼ି ଆଣିବ । କାନ୍ଦୁଲ ବିକି ସେ ଝୋଲା ଟଙ୍କା ବାନ୍ଧିବ । ଅଧାରାତିରେ ବାଡ଼ରେ ଭଡ଼ ଭଡ଼ ଶବ୍ଦ ଶୁଣେ । ରାତୁର ନିଦ ଭାଙ୍ଗିଯାଏ । ଭାଲୁ ଆସି ମକା ଖାଇ ଯାଉଛି । ରାତୁ ସ୍ୱପ୍ନରୁ ଓହ୍ଲାଇ ଆସେ । ଟିଣ ଧରି ଢଂଢଂ ପିଟେ । ଭାଲୁ ଧଡ଼ ଧଡ଼ କରି ପଳାଇଯାଏ । ଗଲାବେଳେ ଆଉ କେତେଟା ମକାଗଛ ଭାଙ୍ଗିଦିଏ ।

ଚଇତି ଆସେ । ଗାଁରେ କେତେ ଟୋକା ଏଥର ଧାଙ୍ଗଡ଼ି ଆଣିବେ । ପୁରା ମାସେ ଚାଲିବ ପରବ । ଧାଙ୍ଗଡ଼ା ଧାଙ୍ଗଡ଼ିଙ୍କ ଡେମ୍‌ସା ନାଚ । ହାତକୁ ହାତ ଧରାଧରି ହୋଇ ନାଚିବେ । ଅଣ୍ଟାରେ ଅଣ୍ଟା ବାଜିବ । କାନ୍ଧରେ କାନ୍ଧ ବାଜିବ । କି ଝିଅ କି ପୁଅ ସମସ୍ତେ ଗୋଟେ ଧାଡ଼ିରେ ଏକାଠି ନାଚିବେ । ଚଇତିର ଶିତୁଆ ଜହ୍ନ କିନ୍ତୁ ଦେହରେ ଗରମ ଆଣିବ ।

ଟୋକାଏ ଏଥର ମାତିଛନ୍ତି । ଏଥର ଡେମ୍‌ସା ବାଜା ଯାଗାରେ ରେକର୍ଡ଼ ଗୀତ ବଜାଇ ନାଚିବେ । କୋରାପୁଟିଆ ଗୀତ ଏବେ ଭାରି ହିଟ୍ ହୋଇଛି ।

"କେଉଁଆଡ଼ର ନନୀ ତୁଇ କେଉଁ ଗଳିରେ ଘର ।"

ହେଲେ ଗାଁରେ ଚାନ୍ଦା ଦେଲାବେଳକୁ କିଏ ଟଙ୍କେ କିଏ ଦୁଇ ଟଙ୍କା ଦେଉଛନ୍ତି । ଡେକ୍, ବାଜା, ପୁଙ୍ଗା, ବ୍ୟାଟେରୀ ମିଶାଇ ଆଠରୁ ଦଶ ହଜାର ଟଙ୍କା ପଡ଼ିବ । ଟୋକାଏ ରାଗିକରି ଚୁର । ଶଳା କମ୍ପାନୀଟା ଥିଲେ ଏବେ ତା'ଠାରୁ ମାଗି ଆଣିଥାନ୍ତେ । ରାତୁ ଶୁଣିକରି ରାଗେ । ଶଳା ଠେଙ୍ଗୁଆ (ବେକାରୀ) ନାଚିବେ ହାତ କ'ଣ ପୋକ ପଡ଼ିଗଲା ? ଶଳା ବାଜା ବଜାଇ ପାରିବେ ନାହିଁ ତ ଡେମ୍‌ସା ଡେଗିବେ କାହିଁକି ? ସେମାନେ କେମିତି ନିଆଁ ଜାଳି ବାଜାକୁ ମଝିରେ ମଝିରେ ଗରମ କରି ରାତି ସାରା ନାଚୁଥିଲେ, ଗିଦନି ଗିଦନି ଗିଦନି, ଗିଦନି ଗିଦନି ଗିଦନି । ଟୋକାଏ ତାର କଥାକୁ ହସରେ ଉଡ଼ାଇ ଦିଅନ୍ତି ।

ସେଥର ରାସ୍ତାରେ ଯାଉଥିବା କାଁ ଭାଁ ଗାଡ଼ି ମଟର, ଅଞ୍ଚଳକୁ ଆସୁଥିବା ଏକମାତ୍ର ବସ୍‌ଠୁ କଲେକସନ ହେଲା । ଦେ ପାଞ୍ଚ ଶହ । ମଦୁଆ ଟୋକାଙ୍କ ରାସ୍ତାରେ ଗହଳି । ବସବାଲା ଧମକ ଦେଇଛି । କାଲିକୁ ବସ୍ ଆଣିବ ନାହିଁ । ତଥାପି ଚାନ୍ଦା ଆଦାୟ ହେଲା । ଟୋକାଏ ପୂରା ମାତିଲେ । ଚଇତି ସରିଗଲା । ଆଦାୟ ଟଙ୍କାର ହିସାବ ରହିଲା ନାହିଁ ।

ଥରେ ପୋଲିସ ଘେରି ଗଲା ଅଞ୍ଚଳଟାକୁ । ବାଘ ଛାଲ ପରି ଛକ ଛକ ଡ୍ରେସ ପିନ୍ଧା ବାହାର ଦେଶର ପୋଲିସେ ଏମାନେ । ହାତରେ ବନ୍ଧୁକ, ପାଦରେ ବୁଟ୍ । ଗାଁକୁ ଗାଁ ଚାଲିଲା ଫ୍ଲାଗମାର୍ଚ୍ଚ । କାହାକୁ ନଦୀରୁ, କାହାକୁ ରାସ୍ତାରୁ, କାହାକୁ ନଦୀ ଘାଟରୁ, କାହାକୁ ହାଟରୁ ପୋଲିସେ ଉଠାଇ ନେଲା । କମ୍ପାନୀର ଅଫିସ ଖୋଲିବ । ବାକି ଲୋକ ମେଳି ହୋଇ ବିରୋଧ କଲେ । ପୋଲିସ ଗୁଳି କଲା । ତାପରେ ଲାଠିଚାର୍ଜ । ଗୋରୁମାନଙ୍କୁ ମାରିଲା ପରି ମାରି ଦେଇଗଲା ଲୋକଙ୍କୁ । ମାଡ଼ ସମ୍ଭାଳି ନପାରି ଥରେ ତଳେ ପଡ଼ିଗଲେ କିଛି ଲୋକ । ସେମାନଙ୍କ ମଧ୍ୟରେ ରାତୁ ମଧ୍ୟ ତଳେ ପଡ଼ିଗଲା । କଟା ଛେଳିକୁ ଉଠାଇ ଫିଙ୍ଗିଲା ପରି ପୋଲିସବାଲା ରାତୁକୁ ମଧ୍ୟ ଭ୍ୟାନ ମଝିକୁ ଫିଙ୍ଗି ଦେଲେ । ତା' ସହିତ ଆଉ ପାଞ୍ଚ ଜଣଙ୍କୁ ମଧ୍ୟ । ଏହାପରେ ଥାନାରେ ଲଙ୍ଗଳାକରି ଫଟୋ ନେଲେ । ସେଠି ମଧ୍ୟ କେହି କେହି ପୋଲିସ ନିଜର ବୁଟ୍‌ରେ ରାତୁର ହାତକୁ ଦଳି ଦେଉଥିଲେ । ଟିକେ ବି ପାଟି କଲା ନାହିଁ । ସେମାନଙ୍କ ମୁହଁକୁ ଚାହିଁଲା । କମ୍ପାନୀର ଗରମ ହାୱା ବାଜିଛି ବୋଲି ଜାଣିଲା ।

ଏତିକିରେ ଅତ୍ୟାଚାର ସରିଲା ନାହିଁ । ଲୋକେ ରାସ୍ତାରେ ଚାଲିବାକୁ ଡରିଲେ । ହାଟକୁ ଯିବାକୁ ଡରିଲେ । କିଏ କିଏ ଗାଁରୁ ବାହାରିବାକୁ ମଧ୍ୟ ଡରିଲେ । ସନ୍ଧ୍ୟା ହେଲେ କବାଟ ପଡ଼ିଗଲା । ପୁରୁଷ ଲୋକେ ସେହି ଅଣ୍ଡା ମାସରେ ବି ଚାଲିଲେ ଡଙ୍ଗର ଉପରକୁ । ମା'ମାନେ ରହିଗଲେ ଘରେ । ଦୁଆର ପାଖରେ ରଖିଲେ ଟାଙ୍ଗି, ଟାଙ୍ଗିଆ, ଘାଗଡ଼ା ଆଉ ମୁଣ୍ଡ ପାଖରେ ରଖିଲେ କାତି ଓ ଇଲା । ନିଜର ସାହି ପଡ଼ିଶାକୁ କହିଲେ କେବେ ବି ସନ୍ଧ୍ୟା ପରେ ଆସିବ ନାହିଁ । କାରଣ ପୋଲିସ ଆସୁଥିଲା ରାତିରେ । ଦୁଆର ଭାଙ୍ଗୁଥିଲା । ଘର ସର୍ଚ୍ଚ କରୁଥିଲା । କାହାକୁ କେମିତି ଧରି ନେଇ ଯାଉଥିଲା । ଗଣତନ୍ତଟା ସତେ ଯେମିତି ଜଳିଯାଇଥିଲା ।

କିଏ ଛଅମାସ, ପୁଣି କିଏ ଦଶମାସ ପରେ ଜେଲ୍‌ରୁ ଆସିଲେ । ରାତୁ ସେଥର ଆସିଲା ଚଉଦ ମାସରେ । ଜେଲ୍‌ରୁ ଖଲାସ ହୋଇ ରାତୁ ଦେଖିଲା କମ୍ପାନୀ ତା'ର ବେଶ କିଛି କାମ କରିଦେଇଛି । ବାଉଣ୍ଡାରୀ କାମ ହୋଇଯାଇଛି । ଏବେ ରାସ୍ତା କାମ ଚାଲିଛି । ବେଶୀ ଟ୍ରକ କେଉଁ ଆଡୁ କେଉଁ ଆଡୁ ଆସି ଲାଗିଛି । ସେଥିରୁ ଗୋଟେ ଟ୍ରକରେ ସବା ଏବେ ଡ୍ରାଇଭର । ଗାଁର କେତେ ଲୋକ କାମରେ ଲାଗିଛନ୍ତି । ଆଉ କେତେ ଟୋକା କମ୍ପାନୀ ଅଫିସ ଆଡ଼େ ନୀତି ଚକର ଲଗାଉଛନ୍ତି ।

ରାତୁର ହୃଦୟ ଫାଟି ଗଲାପରି ଲାଗିଲା । ସେବେଠାରୁ ରାତୁ ପୁରା ନୀରବ । କିନ୍ତୁ ବେଳେବେଳେ ପୁଅର କାମକୁ ନେଇ ସୁଲମେ ସହିତ ଝଗଡ଼ା ହୁଏ । ସୁଲମେ ପୁଅ ପଟର ହେବ କି ରାତୁ ପଟର ହେବ ବୁଝିପାରେ ନାହିଁ । ତାପରେ ତା'ର ବଂଶୀ ସ୍ୱର ଆଉ କେହି ଶୁଣି ନାହାଁନ୍ତି । ରାତୁ ଏବେ ଚୁପ୍‌ଚାପ୍ ବଗିଚାରେ ରହେ । ଅତି ଦରକାର ହେଲେ ଗାଁକୁ ଆସେ ।

ଆଉ ଦିନକର ଘଟଣା । ସନ୍ଧ୍ୟା ସମୟ । ରାତୁର ଘର ଆଗରେ ଭିଡ଼ । ସବାକୁ କେହି ଭୀଷଣ ମାଡ଼ ମାରିଛି । ସବା ତଳୁ ଉଠି ପାରୁନାହିଁ । ରାତୁ ପଚାରି ବୁଝିଲା । ସବା କୁଆଡ଼େ କମ୍ପାନୀର ଡିଜେଲ ଚୋରୀ କରିଥିଲା । ତା'ର ଗାଁର ପାଙ୍ଗୱା ଟୋକା କେତେଟା ତା' ସହିତ ମିଶିଥିଲେ । ସେମାନଙ୍କୁ ସବା ନିଜ ଗାଡ଼ିର ଟାଙ୍କି ଖୋଲି ଡିଜେଲ ଦେଲା । ସେମାନେ ଆଣି ବିକିଲେ । ସବା ଡ୍ୟୁଟିରୁ ଫେରି ତା'ର ଭାଗ ମାଗିଲା । ଭାଗକୁ ନେଇ ଝଗଡ଼ା ହେଲା । ସେମାନେ ସବାକୁ ମାଡ଼ ମାରି ତଳେ ପକାଇଦେଲେ । ଗାଁ ଲୋକ କିଏ ବୋହି ଆଣିଛନ୍ତି ତା' ଘର ଦୁଆରକୁ । ଘରେ ସୁଲମେ ସେଦିନି ନାହିଁ । ତା'ର ଭାଇ ଖବର ଦେଇଥିଲା ନାନିକୁ ଟିକେ ଆସିବା ପାଇଁ । ସୁଲମେ ତେଣୁ ବାରିହାଗୁଡ଼ା ଯାଇଥିଲା ।

ରାତୁ ସମ୍ଭାଳି ପାରିଲା ନାହିଁ ନିଜକୁ । ଭୋ ଭୋ ହୋଇ କାନ୍ଦି ପକାଇଲା । ସେହି ରାତିରେ ଏକୁଟିଆ ରାତୁ ଗାଁରୁ ବାହାରିଗଲା । ଦେଖିବା ଲୋକ ଭାବିଲେ ବାରିହାଗୁଡ଼ା ଯାଉଛି, ସୁଲମେକୁ ଯାଇ ସବୁ କହିବ ।

ଏତେ ଦିନର ରାଗ, ଅଭିମାନ, କଷ୍ଟ ସବୁ ଯେମିତି ଏକାଠି ରାତୁକୁ ଆନ୍ଦୋଳିତ କରୁଥିଲା । କିନ୍ତୁ ସେ ବାରିହାଗୁଡ଼ା ଗଲା ନାହିଁ । କୁଆଡ଼େ ଗଲା କେହି ଜାଣି ନାହାନ୍ତି ।

ଏବେ ଅଞ୍ଚଳରେ ଲୋକେ ପୁଣି ଏକାଠି ହେଲେଣି । ମିଟିଂ ଚାଲିଛି । ହେଲେ କମ୍ପାନୀକୁ ହଟାଇ ପାରିବେ କି ନାହିଁ କେଜାଣି କେମିତି ? ମାତ୍ର ସମସ୍ତେ ରାତୁର କଥାକୁ ମନେପକାଉଛନ୍ତି । ମାସ ପରେ ମାସ ଚାଲିଗଲାଣି । କିନ୍ତୁ ଆଉ କେହି କେବେ ରାତୁକୁ ଦେଖିନାହାନ୍ତି ।



# ଅର୍ଡର ଅର୍ଡର ଅର୍ଡର

କପୁ ମାଝୀ ସକାଳୁ ଉଠି ଆମ୍ବ ଚାରାରେ ପାଣି ଦେଉଛି । ଏଇଟା ତା'ର ନିତିଦିନିଆ କାମ । ସକାଳୁ ଉଠି ସେ ଗଛମାନଙ୍କରେ ପାଣି ଦିଏ । ହେଲେ ଏହି ଆମ୍ବ ଗଛ ତା'ର ଅତି ପ୍ରିୟ । ନିଜ ବଗିଚାର ଆମ୍ବ ଗଛ । କାଶିପୁର କୋର୍ଟରେ ହାଜର ହେବା ଦିନ ବୁଢୀ ତା'ର ମୁଣାରେ ମୁଣା ଭର୍ତ୍ତି ଆମ୍ବ ଦେଇଥିଲା । କେତେ ସେ ଗାଡ଼ିରେ ପୋଲିସବାଲାଙ୍କୁ ଦେଲା, ପୁଣି ଜେଲ୍‌ରେ ସାଥିମାନଙ୍କୁ ଦେଲା । ସମସ୍ତେ ଭାରି ମିଠା ବୋଲି କହି ପ୍ରଶଂସା କରିଥିଲେ । ସେହି ଆମ୍ବର ଟାକୁଆ ଜେଲ୍‌ର ମଝି ଯାଗାରେ ଲଗେଇ ଦେଇଥିଲା, ତା'ରି କନ୍ଧ ପିଲାମାନେ ଆସିଲେ ତାହା ଖାଇବେ ।

କେହି ଜଣେ ପଛରୁ ଡାକିଲା- "କପୁ ମାଝୀ, ବାବୁ ଡାକୁଛନ୍ତି," କପୁ ବୁଲି କରି ଚାହିଁଲା । ଅଫିସ ପିଅନ । ବାବୁ ତା'ମାନେ ଆଜି ସଅଳ ଆସିଗଲେ ! ଜେଲର୍ ସାହେବ ଏତେ ଜଲ୍‌ଦି କେବେ ତ ଆସନ୍ତି ନାହିଁ । କପୁ ଝାଡ଼ିଝୁଡ଼ି ଛିଡ଼ା ହେଲା, ଗୋଡ଼ ହାତ ଧୋଇ ଧିର ପାଦରେ ଅଫିସ ଆଡ଼କୁ ମୁହାଁଇଲା । ମନରେ ଥିଲା ଅନେକ ଆଶଙ୍କା ।

କାଶିପୁର ବ୍ଲକ୍ ନୂଆପଡ଼ା ଗାଁର କପୁ ମାଝୀ ଆଜକୁ ଦୁଇବର୍ଷ ହେଲାଣି ରାୟଗଡ଼ା ଜେଲ୍‌ରେ ବନ୍ଦୀ । ତା'ର ଅପରାଧ ଯେ ସେ ଜଣକୁ ହତ୍ୟା କରିଛି । କପୁକୁ କିନ୍ତୁ ଟିକେ ବି ସେଥିପାଇଁ ଅପରାଧୀ ବୋଲି ଲାଗୁ ନଥିଲା । ସେ ଜାଣେ ସେ ମାରିଛି । ତା'କୁ ବା ଦୋଷ ଲାଗିବ କାହିଁକି ? କିନ୍ତୁ ସେ ଯେ ତା'ର ଚାଷ ଜମିକୁ ଆଉ ଫେରି ପାଇଲା ନାହିଁ, ତା'କୁ ସେଇଟା ବହୁତ କଷ୍ଟ ଦେଇଛି ।

ଆଜକୁ ପାଞ୍ଚବର୍ଷ ତଳର କଥା । ଦୁଇ ଏକର ଜମି ତା'ର । ଜମିକୁ ପାଣି ନାହିଁ ବୋଲି ବୁଢ଼ା ବୁଢ଼ୀ ମିଶିକରି ପାହାଡ଼ ଖୋଲ ଝରଣାରୁ ପାଣି କାଟିଥିଲେ । ପାହାଡ଼ର ଧାରେ ଧାରେ ନାଳୀ କରି ବହୁତ ପରିଶ୍ରମ କରି ସେ ଜମିରେ ପାଣି ପହଞ୍ଚାଇଲେ । ତା'ପରଠୁ ଫସଲ ଖାଲି ଫାଟିବାରେ ଲାଗିଥିଲା । ସେ ଜମି ଚାରିପଟେ ବାଡ଼ ଦେଇ କପୁ ତା'ର ବଗିଚା କଲା । ଗୋଟେ ପାଖେ ଆମ୍ବ, ପଣସ, ସଳପ ଗଛ ଲଗାଇଲା । ସେହି ପାଣିରେ ଧାନ, ମକା, ସୁଆଁ, ଲାଉ, ମାଣ୍ଡିଆ କେତେ କ'ଣ ଫଳେଇଥିଲା ।

ତା'ର ଆଦୌ ଇଚ୍ଛା ନଥିଲା ନିଜ ଜମିକୁ କମ୍ପାନୀକୁ ବିକିବା ପାଇଁ । ହେଲେ କମ୍ପାନୀ ମଧ୍ୟ ଛାଡ଼ିବାକୁ ନାରାଜ । ନୂଆପଡ଼ା ଗାଁର ଜମିକୁ ମିଶାଇ ସେ ସେଠି ପ୍ଲାଣ୍ଟ୍ ବସାଇବ । ହେଲେ କପୁ ମାଝୀର ଏକା ଜିଦ୍ ସେ ତା'ର ପୂର୍ବପୁରୁଷର ଜମିକୁ ବିକିବ ନାହିଁ । କମ୍ପାନୀ କହୁଛି ସର୍ଭେ ସରିଛି, ମ୍ୟାପ୍ କଟା ହୋଇଛି, ସରକାର ବିକି ସାରିଛନ୍ତି, ଏଥିରେ କପୁ ମାଝୀ କିଏ ? କଲେକ୍ଟର ଆସି ବୁଝାଇଲେ- "ମାଟିର ଚାଖଣ୍ଡକ ଜମି ଆଦିବାସୀର, ମାତ୍ର ଚାଖଣ୍ଡେ ତଳକୁ ଛାଡ଼ିଦେଲେ ବାକି ସବୁ ସରକାରଙ୍କର । ସରକାର ପଟ୍ଟା ଦେଇଛନ୍ତି ବୋଲି କପୁ ଆଜି ଚାଷ କରୁଛି । ସରକାର ଏବେ କମ୍ପାନୀକୁ ବିକିଦେଲେ, ଆଉ କପୁର କି ଅଧିକାର ?"

କପୁ ତା'ର ଗାଁ ଲୋକଙ୍କ ସହିତ ରହି ଜବାବ୍ ଦେଲା- "କାହିଁ ତା'ର ବାପା କି କେଜେ ତ ଏକଥା କହିନଥିଲେ ଯେ ଏ ଜମିଟା ସରକାରର ?" ..."ସରକାର ତ କେବେ ଆସି ପଥର ତାଡ଼ି ଜମିଟାକୁ ସମତଳ କରିନଥିଲା ?"

ହେଲେ ପାଖରେ ଥିବା କମ୍ପାନୀର ବଡ଼ ମ୍ୟାନେଜର ମିଶ୍ର ଆଜ୍ଞା କିନ୍ତୁ ସେ ଦିନ ଯୁକ୍ତି କରିଥିଲେ - "ଏବେ ନିୟମ ବଦଳିଲାଣି କପୁ ବାବୁ । ସରକାର ଆମକୁ ଜମି ବିକି ସାରିଛନ୍ତି । ଏଥର ଆମେ ଜମି ନେବା ନିଶ୍ଚୟ । ଆପଣ ଆପଣଙ୍କ କ୍ଷତିପୂରଣ ଟଙ୍କା ଆମ ଅଫିସରୁ ନେଇଯାଆନ୍ତୁ ।"

କପୁ ମାଝୀର ମନ ଏଥିରେ ମାନି ନଥିଲା । ଉଡ଼ିଯାଉଥିବା ଟଙ୍କା ବଦଳରେ ସେ ତା'ର ପୂର୍ବପୁରୁଷର ଜମିକୁ ଦେଇଦେଲେ ପୁଅ ନାତୀ ଖାଇବେ କ'ଣ ? ପୁଣି ଏ ଦୁଇ ଏକର ଜମି ତା'ର ଚାଲିଗଲେ କୋଉ ଜମିର ଧାନକୁଟି ସେ ତା'ର ପୂର୍ବପୁରୁଷଙ୍କୁ ଭାତ ଦେବ ?

କପୁ ମାଝୀକୁ ଚାହିଁ ଗାଁର ବାକି ଲୋକ ଠିଆ ହୋଇଛନ୍ତି । ଜମି ଯାଉଥିବା ଲୋକଙ୍କ ଭିତରୁ ଅଧିକାଂଶ ତା'ର ଭାଇ କି ପୁତୁରା ଲାଗିବେ । ସେମାନେ ତା'କୁ ଅପେକ୍ଷା କରିଛନ୍ତି । କପୁ ଆବା ଯାହା କରିବ, ସେମାନେ ତାହା କରିବେ ।

ଧୀର ପାଦରେ ସେ ଜେଲ୍‌ର ଭିତର ବାରଣ୍ଡା ଉଠିଲା । ସେତିକିବେଳକୁ ଶୁଣିଲା ତା'ର କୁଇ ଭାଷାରେ ପିଲାଟିଏ ଝରକା ଆରପଟେ ରହି ଜେଲ୍‌ରେ ଥିବା ବାପାକୁ କହୁଛି- "ଏ ବର୍ଷ ମାଣ୍ଡିଆ ଭଲ ହୋଇଥିଲା । ଭଲ ପାଚିବ ବୋଲି ଗାଁରେ ଦାଦାମାନେ କହୁଥିଲେ । ସକାଳୁ ଦେଖିଲା ବେଳକୁ କମ୍ପାନୀର ଗାଡ଼ି ରାତିରେ ଆସି ଖରାପ ମାଟି ତା'ର ବିଲରେ ଢାଳି ଦେଇ ପଳାଇଛି । ସେଥିରେ କେତେ ମାଣ୍ଡିଆ ନଷ୍ଟ ହୋଇଗଲା । ରାସ୍ତା ପାଖ ଜମି, ଆଉ କ'ଣ କରିବୁ ?" ପୁଅର ବାପା ଜେଲ୍‌ରେ । ରାତିରେ ଜମିକୁ ଜଗିବ କିଏ ସେ ? ଏମିତି କେତେ କନ୍ଧ ଲୋକ ତ ଜେଲ୍‌ରେ ଭରି ହୋଇ ରହିଛନ୍ତି । ଗୋଟେ କନ୍ଧ ଆଉ ଡମର ଗାଁ ତ ଏଇ ଜେଲ୍‌ଟା ।

କପୁ ମନେ ପକାଇଲା, ତା'ର ମଧ୍ୟ ଏମିତି ହୁଏତ ମାଣ୍ଡିଆ କି କାନ୍ଦୁଲ ହୋଇଥାନ୍ତା । ଏ କମ୍ପାନୀ ରାକ୍ଷସ ଆସି ନଥିଲେ ସେ ମଧ୍ୟ ଶୀତ ରାତିରେ ନିଆଁ ଜାଳି ଫସଲ ପାଚିବାକୁ ଅପେକ୍ଷା କରିଥାଆନ୍ତା । ହେଲେ କଲେକ୍ଟର ବୁଲିକରି ଯିବା ପରଦିନ ତା'ର ଜମିଟାକୁ ବନ୍ଧୁକଧାରୀ ପୋଲିସବାଲା ଘେରିଗଲେ । ତା'ପରେ ପରେ ଆସିଗଲା ବଡ଼ ବଡ଼ ବୁଲଡୋଜର ଓ ହିଟାଚୀ ମେସିନ୍ । କପୁ ମାଝୀର ଜମିଠାରୁ କମ୍ପାନୀ ପାଇଁ ଜମି ହସ୍ତାନ୍ତର ପ୍ରକ୍ରିୟା ଆରମ୍ଭ ହେବ । ବର୍ଷ ବର୍ଷର ପରିଶ୍ରମର ଫଳକୁ ସେହି ହିଟାଚୀଗୁଡ଼ାକ ଲୁହାର ଦାନ୍ତରେ ଆବୁରି ପକାଇଲେ । ଏସବୁ ଦେଖି ନପାରି ସେହି ମେସିନଗୁଡ଼ାକ ତଳେ ଶୋଇଯିବା ପାଇଁ କପୁ ଦୌଡ଼ିଥିଲା । ପଛରୁ ବୁଢ଼ୀ, ପୁଅ, ବୋହୂ, ନାତି ସମସ୍ତେ ଟାଣି ଟାଣି ନେଇ ଆସିଥିଲେ । ସମସ୍ତେ ଜୋର୍‌ରେ କାନ୍ଦି ପକାଇଥିଲେ । ସେମାନଙ୍କ ଆଖି ଆଗରେ ପ୍ରିୟ ଜମିଟାକୁ ଆଉ କେହି ରାକ୍ଷସ ଉଠାଇ ନେଉଛି, ଆଉ ସେମାନେ କିଛି କରିପାରୁନାହାଁନ୍ତି ।

ଏହାପରେ କପୁ ମାଝୀ ତା'ନିଜ ଦେଶରେ ନିଜେ ଜମିହୀନ ଆଦିବାସୀ । ଅନ୍ୟ ଗାଁର ଜମିକୁ ଭାଗ ଧରି ପୁଣି ଚାଷ ଆରମ୍ଭ କଲା । ବଳଦମାନଙ୍କୁ ଫିଟାଇ ଦେଇ ଦୂରରୁ ସେ ତା'ର ନିଜ ଜମିକୁ ଦେଖୁଥାଏ । ଜମି ଉପରେ ଚାଲୁଥିବା ହିଟାଚୀର ଘର୍ ଘର୍ ଶବ୍ଦ ତା'ଛାତିକୁ ଚିରିଦେଲା ପରି ଲାଗେ । ତା'ର ଅଜାଣତରେ ଆଖିରୁ ଦୁଇ ବୁନ୍ଦା ଲୁହ ବୋହିଆସେ । କମ୍ପାନୀ ରାକ୍ଷସ ତା'ର କୁଳବଂଶକୁ ଖାଇ ଯାଉଥିବା ବେଳେ ସେ କେବଳ ଶୂନ୍ୟ ମଣିଷଟିଏ ହୋଇ ସେ ସବୁକୁ ଦେଖୁଥାଏ । ତଥାପି ସେ ତା'ର କୋହକୁ ସମ୍ଭାଳି ନପାରି ଜଣେ ସାମ୍ବାଦିକ ବାବୁଙ୍କ ସାହାଯ୍ୟରେ କଟକ ଆସି ବଡ଼ ଆଶାରେ ହାଇକୋର୍ଟରେ କେସ୍ ଫାଇଲ କଲା- 'ଆଦିବାସୀ ଜମିକୁ ଜୋର ଜବରଦସ୍ତି କମ୍ପାନୀ ନେବା ସମ୍ବିଧାନ ବିରୋଧୀ ।' ଓକିଲ ଆଜ୍ଞା ସେ ଦିନ କପୁକୁ ଭରସା ଦେଲେ,- "ଆମେ ନିଶ୍ଚୟ ଜିତିବା ।" ତା'ପରେ ଆଉ କପୁକୁ ବେଶୀ ଥର କଟକ ଯିବାକୁ ପଡ଼ିନାହିଁ । ଓକିଲ ଆଜ୍ଞା ଭଲ ସାହାଯ୍ୟ କଲେ । ଜଜ୍‌ମାନେ ଲମ୍ବା ସମୟ ଧରି କପୁ ମାଝୀର କେସ୍‌କୁ ଶୁଣିଲେ ।

ଏ ଭିତରେ ବେଶ୍ କିଛି ମାସ ବିତିଗଲା । କପୁ ତାର ଗାଈ ବଳଦଙ୍କୁ ଚରାଉଥିବା ବେଳେ କମ୍ପାନୀର ହିଟାଚି, ବୁଲଡୋଜର୍ ପାମ୍ପଲେନ୍‌ଗୁଡ଼ିକୁ ଚାହେଁ । ବେଳେବେଳେ ସେ ତା'ର ଟାଙ୍ଗିଆଟା ଶକ୍ତ କରି ଧରେ । ସେହି ଡ୍ରାଇଭରର ମୁଣ୍ଡଟାକୁ ଯାଇ ଛେଚିଦେବ କି ? ମାତ୍ର ପୁଣି ରହିଯାଏ, ଭାବେ ଜଜ୍‌ମାନେ ଯଦି ରାଗିବେ, ଆଉ କହିବେ- 'କପୁ ମାଝୀ, ଆମ ଉପରେ ଟିକେ ଭରସା କଲ ନାହିଁ, ତେବେ ?' କପୁ ପୁଣି ଏସବୁ ଭାବି ନୀରବ ରହେ ।

ଦିନେ ସେହି ସାମ୍ବାଦିକ ବାବୁଙ୍କ ମାଧ୍ୟମରେ ଓକିଲ ଆଜ୍ଞା ଚିଠି ଦେଲେ- "କପୁ ବାବୁ, ନମସ୍କାର ନେବେ । କେସ୍‌ର ଶୁଣାଣି ସରିଯାଇଛି । ଜଜ୍ ଫଇସଲା ଶୁଣାଇବେ ଶୁଣାଇବେ କହି ଶୁଣାଇଲେ ନାହିଁ । ସେ ଏବେ ରିଟାୟାର୍ଡ଼ କରିଗଲେ । ନିୟମ ଅନୁସାରେ ଏଥର ପୁଣ

ଥରେ କେସ୍ ମୂଳରୁ ଫାଇଲ୍ ହେବ । ପୁଣି ନୂଆ ଜଜ୍ ବସି କେସ୍‌କୁ ମୂଳରୁ ଶୁଣିବେ । ତୁମକୁ ଏଥିପାଇଁ ଆଉ ଥରେ କଟକ ଆସିବାକୁ ପଡ଼ିବ ।"

କପୁ ସେଥର ତଳକୁ ଚାହିଁ ତା'ର ଆଖିର ଲୁହକୁ ଲୁଚାଇବାକୁ ଚେଷ୍ଟା କଲା । ସାମ୍ବାଦିକ ବାବୁଙ୍କୁ ମନା କରିଦେଲା । କପୁ ମାଝୀର ଶକ୍ତି କମି ଆସିଲାଣି, ଆଉ ପାରିବ ନାହିଁ ବୋଲି ଉତ୍ତର ପଠେଇଥିଲା । ସେଦିନ ରାତିରେ ସେ ସ୍ୱପ୍ନ ଦେଖେ, ସେହି ବୁଲ୍‌ଡୋଜର ଆଉ ହିଟାଚୀ ଜମିଟାକୁ ଅକ୍ତିଆର କରି ରଖିଛି । ସେମାନଙ୍କ ଭିତରେ ଠିଆ ହୋଇ ମ୍ୟାନେଜର ମିଶ୍ର ଆଙ୍ଗୁଠି ଯେମିତି ପଚାରୁଛି- "କପୁ ମାଝୀ, କୋର୍ଟ କି ନ୍ୟାୟ ଦେଲା ? କେବେ ଆମକୁ ଜମି ଛାଡ଼ିବାକୁ ହେବ ?" ସେଦିନ ଖଟିଆରୁ ଧଡ଼କରି ଉଠି ସେ ବତୀଟାକୁ ତେଜିଦେଲା । ମୁହଁଟାକୁ ପୋଛି ଦୁଆରବନ୍ଧ ଆଡ଼କୁ ଚାହିଁଲା । ଲୁହାକିଳା ବସା ଅନ୍ଧାରୁଆ କଳା କବାଟ ଆଡ଼କୁ ବିସ୍ଫାରିତ ଆଖିରେ ଚାହିଁ କପୁ ମାଝୀ କମ୍ପାନୀର ଶକ୍ତିକୁ ତୁଳିବାକୁ ଲାଗିଲା । - 'ଏମାନଙ୍କ ମଣିଷପଣିଆ ବୋଲି କିଛି ନାହିଁ । ଏମାନେ ସମସ୍ତଙ୍କୁ କିଣି କରି ନେଇପାରନ୍ତି - ଏ ପୋଲିସ୍‌କୁ, ଜଜ୍‌କୁ, ଆଉ ଏ ସରକାରକୁ ମଧ୍ୟ ।'

ମନେ ମନେ ଭାବିଲା ପୂର୍ବପୁରୁଷ ଡୁମା ଦେବତା, ତା'ଉପରେ ଏତେ ରାଗିଲେ କାହିଁକି ? କେବେ ତ ସେ କୌଣସି ପୂଜା ପର୍ବରେ ହେଳା କରିନାହିଁ କି ପର୍ବ ଆଗରୁ କାନ୍ଦୁଲ କି ଆମ୍ବ କି କଖାରୁ ଖାଇନାହିଁ? ମା' ଶୁନ୍‌କୋଡ଼ିର ରାଗ ତା' ଉପରେ କାହିଁକି ? ତା'କୁ ଏତେ କଷ୍ଟ କାହିଁକି ହେଲା । ସମୟ ସମୟରେ ବୁଢ଼ୀର ଆଗରେ ମନର କଥା କହି କାନ୍ଦେ । କମ୍ପାନୀର ଟଙ୍କାକୁ ପୁଣିଥରେ ଛି କରିଦିଏ । ଜମି ଯାଉ ପଛେ କମ୍ପାନୀ ହାତରୁ ସେ ଟଙ୍କା ନେବ ନାହିଁ ।

କପୁ ଦେଖୁଥାଏ ସକାଳୁ ସକାଳୁ ଗାଁର ପୁଅଝିଅମାନେ ହାତରେ ମାଣ୍ଡିଆ ଜାଉର ବୋତଲ ଧରି କମ୍ପାନୀ ପ୍ଲାଣ୍ଟ୍ ଆଡ଼କୁ ଚାଲିଛନ୍ତି । କମ୍ପାନୀର କାମ ଜୋର୍‌ସୋର୍‌ରେ ଚାଲିଛି । ଆସନ୍ତା ଦୁଇବର୍ଷ ମଧ୍ୟରେ ଉତ୍ପାଦନ ଆରମ୍ଭ ହେବ । ବଡ଼ ବଡ଼ ମେସିନ୍‌ରେ ଗାତ ଖୋଳାଯାଉଛି । ଡିନାମାଇଟ୍ ଦେଇ ପଥର ସବୁ ଫୁଟା ଚାଲିଛି । କଳକବ୍‌ଜା ସବୁ ଠିକ୍ ଜାଗାରେ ବସିବାରେ ଲାଗିଛି । ବାହାରୁ ବହୁତ କଣ୍ଟ୍ରାକ୍ଟର ଆସି କମ୍ପାନୀର କାମ ଧରିଛନ୍ତି । ଏହି ଛୋଟ ପୁଅଝିଅମାନେ ସେହି କଣ୍ଟ୍ରାକ୍ଟର ପାଖରେ ଠିକାରେ ଲାଗିଛନ୍ତି । ଟିକିରିର ପିଲାଟେ କୋଉ କଣ୍ଟ୍ରାକ୍ଟର ପାଖରେ ମେଟ୍ ଅଛି । ସେ ଏମାନଙ୍କୁ ପ୍ରତିଦିନ ନେଇଯାଉଛି ।

ଦିନକର ଘଟଣା । ଜ୍ୟେଷ୍ଠ ମାସର ସକାଳର ଖରା ଶୀଘ୍ର ଟାଣ ଧରିଲା । ଦ୍ୱିପହର ସମୟ । କପୁ ତା'ର ଭାତ ଥାଳିରେ ହାତ ଦେଇଛି, ଗାଁର ପିଲାଟା ଆସି ଖବର ଦେଲା । ତା'ରି ଗାଁର ଝିଅ ଭିତରୁ ଜଣକ ଉପରେ ପଥର ମାଡ଼ିଗଲା । ମରିଗଲା କି କ'ଣ କେଜାଣି । ଗାଁର ଝିଅଟା ଶୁଣି କପୁ ଆଉ କି ଖାଏ । ବାହାରକୁ ଆସି ଦେଖିଲା, ମା'ମାନେ କାନ୍ଦ, ବୋବାଳି ପକାଇ ପ୍ଲାଣ୍ଟ୍ ଭିତରକୁ ଚାଲିଛନ୍ତି । ଗାଁର ଅନ୍ୟମାନେ ଠେଙ୍ଗା ବାଡ଼ି ଧରି ସେହିଆଡ଼କୁ

ଦୌଡ଼ୁଛନ୍ତି । ସେ ମଧ୍ୟ ତା'ର ଠେଙ୍ଗାଟା କାନ୍ଧରେ ପକାଇ ପ୍ଲାଣ୍ଟ୍ ଆଡ଼କୁ ଦୌଡ଼ିଲା । ଏତେ ବର୍ଷର କୁହୁଳୁଥିବା ନିଆଁରେ କେହି ଜଣେ ତେଲ ଢାଳି ଦେଲା ।

ପଥରର ସନ୍ଧିଦେଇ କେତେ ଭିତରକୁ ସମସ୍ତେ ଚାଲିଛନ୍ତି । କପୁ ମଧ୍ୟ ଚାଲିଛି । ତା'ର ଗାଁର ଜମି ଇଏ । ଏଇଠି ବସି ହଳ କରିଛି, ବିହନ ବୁଣିଛି, ପାଣି ମଡ଼ାଇଛି, ଘାସ ବାଛିଚି, ହାଲିଆ ମାରିଛି । ତା'ର ଜୀବନ ସହିତ ଜଡ଼ିଯାଇଥିଲା ଏ ଜମି । ଅଥଚ ଆଜି ସେ ନିଜ ଗାଁର ଜମିକୁ ନିଜେ ଚିହ୍ନିପାରୁନାହିଁ । ପଥର, ଗାତ ଓ ମାଟିଗଦା ମଧ୍ୟରେ ତା' ଗାଁର ଜମି ସବୁ ହଜିଗଲା ଭଳି ତା'କୁ ଲାଗୁଛି । ସେ ଯେମିତି ଏ ଭିତରେ ବହୁ ଦୂର ଚାଲି ଆସିଲାଣି ତଥାପି ପହଞ୍ଚିପାରୁନାହିଁ ।

ପଥରର ସେହି ଗଦାର ଗୋଟେ କୋଣରେ ମା' ମାନେ ଘେରିଯାଇ କାନ୍ଦିବାରେ ଲାଗିଛନ୍ତି । ତିଳ ତାର ନାତୁଣୀ ଲାଗିବ । ତିଳର ବାପା ଡ଼ିଅ ମାଝୀ କପୁର ନିଜ ପୁତୁରା ହେବ । କମ୍ପାନୀର ପଥର ଖୋଳା ଚାଲିଥିଲା । ପଥର ଗଦାରୁ ଛୋଟ ପଥର ଓ ବଡ଼ ପଥରକୁ ଅଲଗା କରିବା ପାଇଁ ମେଟ୍ ଟୋକା କହିଦେଇ ଯାଇଥିଲା । ଛୋଟ ପଥରଟାକୁ ଟାଣିଲା ବେଳକୁ ବଡ଼ ପଥରଟା ଖସି ଆସିଲା । ଏକ୍‌ଦମ୍ ତଳେ ଚାପିଦେଲା ।

ଗାଁ ଲୋକେ ଏଥର ଶବ ଉଠାଇବା ପାଇଁ ରାଜି ହେଉ ନଥିଲେ । ଗାଁ ଲୋକଙ୍କ ରାଗ ଦେଖି କମ୍ପାନୀର ଅଫିସର୍‌ମାନେ ଲୁଚିଯାଇଥିଲେ । ମାତ୍ର ବଡ଼ ମ୍ୟାନେଜର୍ ମିଶ୍ର ଆଜ୍ଞା ସିକ୍ୟୁରିଟି ଗାର୍ଡ଼ଙ୍କ ସାଙ୍ଗରେ ସେ ଯାଗାରେ ପହଞ୍ଚିଲେ – "ଯାହା ହୋଇଛି ଏଥର କ୍ଷମା ଦିଅ । ଝିଅର ଶୁଦ୍ଧିକ୍ରିୟା ପାଇଁ ଆମେ ଦଶହଜାର ଟଙ୍କା ଦେବୁ । ଝିଅର ଶବକୁ ନେଇଯାଆନ୍ତୁ ।" ହାତ ଯୋଡ଼ି ସେ ଡ଼ିଅକୁ ବୁଝାଇବାକୁ ଚେଷ୍ଟା କରୁଥିଲା । କପୁ ଠିକ୍ ଡ଼ିଅ ପାଖରେ ଠିଆ ହୋଇ ସବୁ ଶୁଣୁଥିଲା – "ଶଳା, ଭୂତ ହୋଇ ଲାଗିବ, ପୁଣି ଗୁଣିଆ ସାଜି ଛଡ଼େଇ ଆସିବ ।" କପୁ ରାଗିକରି ପାଚିଗଲା । କେଉଁଠୁ ଏତେ ଶକ୍ତି ଆସିଲା ସେଦିନ କପୁ ଦେହରେ ସେ ନିଜେ ଜାଣିପାରିଲା ନାହିଁ । ନିଜର ଶକ୍ତ ଠେଙ୍ଗାଟାକୁ ଆହୁରି ଶକ୍ତରେ ଧରି ମ୍ୟାନେଜର୍‌ର ମୁଣ୍ଡକୁ ବହୁ ଜୋର୍‌ରେ ଆଘାତ କଲା । ସିକ୍ୟୁରିଟି ଗାର୍ଡ଼ମାନେ ରୋକି ପାରିଲେ ନାହିଁ । ବାସ୍ । ନିଶ୍ଚଳ ଦେହଟା ସେହି ପଥର ଉପରେ ପଡ଼ିଗଲା ।

ବିଚାର ଚାଲିଲା । ରାୟଗଡ଼ାରେ ଜଜ୍ ପଚାରିଥିଲେ – "କପୁ ମାଝୀ, ତୁମେ କିଛି କହିବ ?" କପୁ କହିଲା – "କାହିଁକି ମିଛ କହିବି ? ମୁଁ ଜାଣିନି କେମିତି ହେଲା । ମାତ୍ର ହାତର ଠେଙ୍ଗାଟା ଯେମିତି କେହି ଟାଣ କରି ତା'କୁ ଧରାଇଦେଲା ଆଉ କହିଲା, 'ଏତେ ବର୍ଷ ହେଲାଣି ତୁ ଯାହାକୁ ଖୋଜୁଥିଲୁ, ଆଜି ସେ ତୋ ସାମ୍ନାରେ ।' ତା'ପରେ ମୁଁ ଆଉ କିଛି ଜାଣିନି ।" ଜଜ୍ ଆଉ ବେଶୀ କିଛି ପଚାରି ନଥିଲେ ।

ଜେଲ୍‌ର ମୁଖ୍ୟ ଅଫିସ ଭିତରକୁ ପଶିଗଲା ବେଳକୁ କପୁ ଦେଖିଲା, ସତରେ ଜେଲର୍ ସାହେବ ଆସିଯାଇଛନ୍ତି । ସେ ସିଧା ଆସି ଟେବୁଲ ପାଖରେ ଠିଆ ହେଲା । ଜେଲର୍ କପୁର

ମୁହଁକୁ ନଚାହିଁ କହିଲେ, "କପୁ ! ତୁମର ଜଜ୍‌ମେଣ୍ଟ୍ ଆସିଯାଇଛି । ନ୍ୟାୟ ତୁମ ସପକ୍ଷରେ ଯାଇନାହିଁ । ମୋତେ ଖରାପ ଭାବିବ ନାହିଁ । କୋର୍ଟ ତୁମକୁ ଫାଶୀର ଅର୍ଡର ଦେଇଛି । ତୁମର କେହି ଲୋକ ଥିଲେ ଉପର କୋର୍ଟରେ ଦରଖାସ୍ତ କରିବ । ନଚେତ୍ କୋର୍ଟ ତୁମର ଫାଶୀର ତାରିଖ ଠିକ୍ କରିବ ।" ଏତିକି କହି ସେହି ଇଂରାଜୀ ଲିଖିତ ଚିଠିଟାକୁ କପୁ ଆଡ଼କୁ ବଢ଼ାଉ ବଢ଼ାଉ ପୁଣି ଫାଇଲ ଭିତରେ ରଖିଦେଲେ ।

କପୁ ଆଖିର ଲୁହ ମଧ୍ୟ ଏଥର ଯେମିତି ନୀରବ ହୋଇଯାଇଥିଲା । ଅଫିସ ବାହାରକୁ ଆସି ସେହି ଆମ୍ବଗଛ ପଥର ପାଖରେ ସେ ଧିରେ ବସି ପଡ଼ିଲା । ତା'ଙ୍କୁ ସବୁ କଥା ଗୁଡ଼ାକ ଏକାଠି ମନେ ପଡ଼ିଗଲା । ଘର, ବଗିଚା, ନାତି, ନାତୁଣୀ, ବୁଢ଼ୀ, ପୁଅ, ବୋହୂ ତା'ର ପ୍ରିୟ ଆମ୍ବଗଛ ସବୁ ଯେମିତି ଏକାଠି ଏକାବେଳେ ତା' ମନକୁ ଚାଲିଆସିଲେ । ବହୁ ଜୋର୍‌ରେ ସେ କାନ୍ଦି ପକାଇଲା । ହୋ ହୋ ହୋଇ କାନ୍ଦିବା ଭିତରେ ତା'ର କନ୍ଧ, ପରଜା, ଡମ ଭାଇମାନେ ତା'କୁ ଲାଗି ଆସିଲେ । ଏକାଥରେ ସମସ୍ତଙ୍କ ଆଖିରେ ଲୁହ ଭରିଗଲା ।

ଏହାପରେ କିଛି ଦିନ ବିତିଗଲା । ଦିନେ ରାତିରେ କପୁ ସ୍ୱପ୍ନ ଦେଖୁଛି, ତା'ର ଜମିରେ ବହୁତ ମାଣ୍ଡିଆ ହୋଇଛି । ମାଣ୍ଡିଆର କେଣ୍ଡା ବାମକୁ ଡାହାଣ ହୋଇ ଖେଳି ଚାଲିଛି । ଉପରୁ ଜହ୍ନ ଆଲୁଅ ପଡ଼ି କେଣ୍ଡାଗୁଡ଼ିକ ଆହୁରି ଚିକ୍ ଚିକ୍ କରୁଛି । କଳା ଜନ୍ତୁଟେ ଆସି ତା'ର ମାଣ୍ଡିଆ ସବୁ ଖାଇଯାଉଛି । ଯେତିକି ଖାଉଛି, ତା'ଠୁ ଅଧିକ ନଷ୍ଟ କରିଦେଉଛି । ସେ ଉଠିବାକୁ ଚେଷ୍ଟାକରି ପାରୁନାହିଁ । ପାଟି କଲେ ମଧ୍ୟ ପାଟି ଫିଟୁ ନାହିଁ । ତା'ର ହାତଗୋଡ଼ ଦେହ ସବୁ ଯେମିତି ଥଣ୍ଡା ହୋଇଯାଉଛି ।



# ଜଣେ ବିଦ୍ରୋହୀର ବାପାଙ୍କ କ୍ଷୋଭ

"ନାମ : କୁରୁପା ମାଝି, ପିତା : ସାଉଡା ମାଝି, ଗ୍ରାମ : ଉପରମାଣ୍ଡାଙ୍ଗୀ, ପଞ୍ଚାୟତ : ସୁରୁବେଡ଼ା, ଜିଲ୍ଲା : ଗଜପତି, ବୟସ : ୨୦ ବର୍ଷ । ସବୁ ଠିକ୍ ଅଛି ତ ? ନା କିଛି ଭୁଲ ରହିଲା ?" ପୋଲିସ ଅଧିକାରୀ ଜଣକ ଉଚ୍ଚ ସ୍ୱରରେ ସାଉଡ଼ାକୁ ପଚାରିଲେ ।

କ୍ଷୀଣ ସ୍ୱରରେ ସାଉଡ଼ା ଉତ୍ତର ଦେଲା "ହଁ" ।

"ଆରେ ଜୋର୍‌ରେ କହ ଠିକ୍ ଅଛି ତ ? ହଁ ନା ନାଇଁ ?" – ଏଥର ଅଧିକାରୀଙ୍କ ସ୍ୱରରେ ଥିଲା ବିରକ୍ତି ମିଶା କର୍କଶତା ।

ସାଉଡ଼ା ଆଉ ଟିକେ ଉଚ୍ଚ ସ୍ୱରରେ କହିଲା- "ଆଜ୍ଞା ହଁ ।" ସ୍ୱରରେ ଥିଲା ଏସବୁରୁ ଯଥା ଶୀଘ୍ର ମୁକ୍ତି ପାଇବାର ଚେଷ୍ଟା ।

ସେତେବେଳକୁ ଦିନ ଯାଇ ସନ୍ଧ୍ୟା ହେବାକୁ ବସିଲାଣି । ଏହା ପରେ ଅନ୍ଧାର ମାଡ଼ି ଆସିବ । ଶବ ବ୍ୟବଚ୍ଛେଦ ଗୃହ ପାଖାପାଖି ଅଞ୍ଚଳ ଖାଁ ଖାଁ ହୋଇଯିବ ।

"ଏଠାରେ ସନ୍ତକ କରି ଡେଡ୍‌ବଡିକୁ ନେଇଯାଅ ।" ନିର୍ଦ୍ଦେଶ ଦେବା ସ୍ୱରରେ ଅଧିକାରୀ ଜଣକ କହିବା ସହିତ ଲେଖା କାଗଜଟିକୁ ସାଉଡ଼ା ହାତକୁ ବଢ଼ାଇଦେଲେ ।

ସାଉଡ଼ାକୁ କିନ୍ତୁ ବିଶ୍ୱାସ ହେଉନଥିଲା । ତା ଆଖି ଆଗରେ ପଡ଼ିଛି କୁରୁପାର ଶବ । ହଳର କଣ୍ଟି ଠିକ୍ ଧରିନପାରି ବଳଦର ଗୋଡ଼ ଖଣ୍ଡିଆ କରିଦେଇଥିବା ହେତୁ ସେଥର କେତେ ଯେ କେତେ ମାଡ଼ ଖାଇଥିବା କୁରୁପା ଆଉ କେବେ ତା' ପାଖରେ ଠିଆ ହୋଇ ବଳଦ କାନ୍ଧରେ ଲଙ୍ଗଳ ଯୋଚି ପାରିବନି କି ତା' ସହିତ ମିଶି ଧାନର ଗଦା ମାରିପାରିବନି । ସେ ଏଥର ସବୁ ଦିନ ପାଇଁ ତା'କୁ ଛାଡ଼ି ପଳାଇଲା । ସାଉଡ଼ାର ଆଖିରୁ ଲୁହ ସରିଗଲାଣି । ତଥାପି ସେ ଆଉଥରେ ଗାମୁଛାରେ ମୁହଁ ପୋଛିଲା ।

'କ'ଣ ଦରକାର ଥିଲା ଘରକୁ ଆସିବା ? ତା' ମା'କୁ କଣ ମୁଁ ଭଲ କରିପାରିନଥାନ୍ତି ? ମୁଁ କ'ଣ ଡାକ୍ତରଖାନା ନେଇ ନଥାନ୍ତି ?' ସାଉଡା ଏ ଭିତରେ କେତେ ଥର ସେହି କଥାକୁ ଭାବିସାରିଲଣି । ଗୁଣୁ ଗୁଣୁ ସ୍ୱରରେ ନିଜକୁ ନିଜେ ପଚାରି ସାରିଲାଣି । ତା'ର ଗୁଣୁଗୁଣୁ ସ୍ୱର

ଶୁଣି ପାଖରେ ଠିଆ ହୋଇଥିବା ଗାଁଭାଇ ଜଣକ ପଚାରି ସାରିଲାଣି, "ଦାଦା କ'ଣ କହିଲ କି ?" - "ନା, କିଛି ନାଇଁ ।" ସାଉଡ଼ା କେତେଥର ଉତ୍ତର ଦେଇସାରିଲାଣି ।

"ଜଣେ ମଲା । ଆହୁରି କେତେ ଯେ ଅଛନ୍ତି ।" ପୁଲିସ ଅଧିକାରୀ ଜଣକ ବୁଲିପଡ଼ି ଗୁଣୁ ଗୁଣେଇଲେଣି । "ପୁଲିସକୁ ମାରିଲେ କଣ ମିଳିବ ? ବନ୍ଧୁକ ? ଠିକାଦାରଠୁ ଟଙ୍କା ନେଉଛନ୍ତି ସେଥିରେ ବନ୍ଧୁକ କିଣୁନାହାନ୍ତି, ଶଳେ ?" ପାଖରେ ଠିଆ ହୋଇଥିବା ଡାକ୍ତରଙ୍କୁ ଚାହିଁ ଅଧିକାରୀ ଜଣକ କହିଲେ । ଡାକ୍ତର କିନ୍ତୁ ଥିଲେ ନୀରବ ଓ ଗମ୍ଭୀର ।

ବିଦ୍ରୋହୀଙ୍କ ଗଲା କିଛି ମାସ ଆଗରୁ ଗୁମା ଘାଟିରେ ଅତର୍କିତ ଆକ୍ରମଣରେ ବେଶ କିଛି ସରକାରୀ ଯବାନ ମରିଥିଲେ । ବିଦ୍ରୋହୀମାନେ ଯବାନଙ୍କ ସବୁ ବନ୍ଧୁକ ଛଡ଼େଇ ନେଇଥିଲେ । ସେଥର ସେମିତି ଏହି ଶବ ବ୍ୟବଚ୍ଛେଦ ଗୃହ ସାମ୍ନାରେ ଜଣେ ଯବାନଟିର ବାପାର ବିକଳ କ୍ରନ୍ଦନ ସବୁ ଦେଖଣାହାରୀଙ୍କ ଭିତରେ ପିତାପୁତ୍ର ସମ୍ପନ୍ଧର ଅସମାହିତ ପ୍ରଶ୍ନର ଯେମିତି ପୁଣିଥରେ ଉତ୍ତର ଖୋଜିଦେଉଥିଲା । ସେଥରର ବ୍ୟସ୍ତବିବ୍ରତ ପୁଲିସ ଅଧିକାରୀ ଓ ଗମ୍ଭୀର ଥିବା ଡାକ୍ତର ଜଣକ ଆଜି ବି ସେହି ସମାନ କାରଣରେ ଶବ ବ୍ୟବଚ୍ଛେଦ ଗୃହ ସାମ୍ନାରେ ଠିଆ ହୋଇଥିଲେ ।

କେବେ କେବେ ସାଉଡ଼ା ସ୍ୱପ୍ନ ଦେଖେ କୁରୁପା ତାକୁ ଆସି ଉଠାଉଛି । 'ଆବା ଦେଖ, ସେଥର ତୁମକୁ ଯିଏ ମାରିଥିଲା ଆଜି ତାକୁ ଧରି ଆଣିଛି ।' ଗଲା କିଛି ବର୍ଷ ତଳେ ପାଖ ଜଙ୍ଗଲ ଅଧିକାରୀ ଜଣକ କାଠ ଚୋରି କେସ୍ ଲଗାଇ ତା'ର ଘରୁ ସବୁ ଜିନିଷ ଲୁଟି ନେଇଥିଲେ । ପାଟିକଲାରୁ ଏମିତି ମାରିଥିଲେ ଯେ ସପ୍ତାହେ କାଳ ସେ ଶେଯରୁ ଉଠି ପାରିନଥିଲା । ତା'କୁ ଲାଗୁଥିଲା କୁରୁପାର ହୃଦୟ ଅଛି । ଅଞ୍ଚଳର ଦୁଃଖ, ସୁଖ, ଜଙ୍ଗଲ, ମାଟି ପାଇଁ କୁରୁପା ଜୀବନ ଦେବାକୁ ବାହାରିଛି ।

କୁରୁପାର ଦଳ ଗାଁକୁ ଆସିଲେ ସେ ଆଗେ ଆଗେ ଚାଉଳ ଏକାଠି କରିଦିଏ । ଡେକଚି, ହାଣ୍ଡି ଘରୁ କାଢ଼ି ଦେଇଦିଏ । ସେ ଗରବରେ କୁହେ- "ପୁଅ ମୋର ଶୋଇଲା କୁକୁର ନୁହେଁ ଯେ ଥରେ ଭୁକି ଦେଇ ଚୁପ ପଡ଼ିଯିବ ।" ବିଦ୍ରୋହୀଙ୍କୁ ଦେଖିଲେ ତା'ର ପେଟ ପୂରିଯାଏ । ତାକୁ ଭରସା ଲାଗେ । ବାହାର ଲୋକେ ନିଶ୍ଚେ ଡରିବେ । ତା'ର ଚାଷକଲା ଫସଲ ଏଥର ନିଶ୍ଚେ ରହିବ । ଜଙ୍ଗଲଟା ଆଉ ଆପଣା ଛାଏଁ ପଦା ହୋଇଯିବନି ।

ପୁଅର ବିଷୟରେ ନିଜ ବୁଢ଼ୀ ଆଗରେ ପ୍ରଶଂସା କରେ । - "ରହିଥା ମୋ ପୁଅର ସରକାର ନିଶ୍ଚେ ଆସିବ । ସେତେବେଳେ ଦୁଇ କିଲୋ ହଳଦୀ କିଲେ କରି ବେପାରୀ ନେଇଯିବ ନାହିଁ କି ଆଜି ଚାଷ କଲା ଜମି କାଲି ସାହୁକାର ହାତକୁ ଉପରେ ଉପରେ ଚାଲିଯିବ ନାହିଁ ।" ଗାଁ ଲୋକଙ୍କୁ କିନ୍ତୁ ଏମିତି କହିଲା ବେଳେ ସେ ଚାରିପାଖକୁ ଚାହେଁ, କେହି ଅଜଣା ଲୋକ ଶୁଣି ଦେଉନାହାନ୍ତି ତ ? କାନ୍ଥର ବି କାନ ଅଛି । ପୁଲିସ ଆଉ ତା'କୁ ବାନ୍ଧିନେବ ନାହିଁ ତ ?

ହେଲେ କୁରୁପା ଜାନି ଆସିବା ଦିନ ସକାଳ ହେବା ଆଗରୁ ସାରା ଗାଁକୁ ପୁଲିସ ଘେରି ଯାଇଥିଲେ । ରାତିରେ ଆସିଥିଲା ବୁଢୀ ମା'କୁ ଭଲ ଔଷଦ ଦେଇ ପଳେଇଯିବ । ରାତିରେ ତା' ଆସିବାକୁ ବାଟରେ କିଏ ଦେଖି ଦେଇଥିଲେ କି କ'ଣ କିଏ ଯାଇ ପୁଲିସକୁ କହିଦେଲା । ପୁଲିସ ଆସି ରାତି ରାତିରେ ହାଜର । ସେହି ପାଳଗଦା ଭିତରୁ ଟାଣି ଆଣିଲେ । ମାରି ମାରି ରାସ୍ତା ଉପରକୁ ନେଇଗଲେ । ବିରୋଧ କରିବା ଲୋକର ମୁଣ୍ଡକୁ ବନ୍ଧୁକ ଦେଖାଇ ଧମକେଇଲେ, – "ତୁ ବି ସେଠି ମିଶିଛୁ । ତତେ ଏନ୍‌କାଉଣ୍ଟର୍ କରିଦେବୁ ।" ପଛରେ ଖବର ଆସିଲା- 'ପୁଲିସକୁ ମାରିବା ପାଇଁ ବନ୍ଧୁକ ଛଡ଼ାଉଥିଲା, କୁରୁପାର ଏନ୍‌କାଉଣ୍ଟର୍ ହୋଇଗଲା ।' ସମସ୍ତେ ଜାଣିଲେ ପୁଲିସ ତାକୁ ପାଖ ଜଙ୍ଗଲରେ ଠିଆ କରି ଗୁଳି କରିଦେଲେ । ବନ୍ଧୁକର ଆୱାଜ ବି ସେମାନେ ଶୁଣିଲେ । ସତ କଥା କାହାକୁ କହିବେ ? ସବୁ ଦିନ ପାଇଁ କୁରୁପାର ଠିକଣା ସେହି ଜଙ୍ଗଲ ଭିତରେ ହଜିଗଲା ।

ସାଉଡ଼ା ଯଥା ସ୍ଥାନରେ ସନ୍ତକ କରି ଅଧିକାରୀଙ୍କ ଠାରୁ କାଗଜର ଏକ କପି ଧରିଲା । ଏଥର ନିଜ ଗାମୁଛାର ଗଣ୍ଠି ଖୋଲି ପାଞ୍ଚ ଶହ ଟଙ୍କାର ନୋଟ୍ ଖଣ୍ଡିଏ ଗାଁର ଭାଇକୁ ଗାଡ଼ିରେ ତେଲ ପକାଇବା ପାଇଁ ବଢ଼ାଇଦେଲା । ସେହି ଗାମୁଛାରେ ବାକି ପାଞ୍ଚ ଶହ ଟଙ୍କାର ନୋଟ ଖଣ୍ଡିକ ରଖି ପୁଣି ଥରେ ଗଣ୍ଠି ପକାଇଲା ।

– "ଏତେ ଟଙ୍କା କେଉଁଠୁ ଆଣିଲ ?" ପାଖରେ ଠିଆ ହୋଇଥିବା ଡାକ୍ତର ଜଣକ ପଚାରିଲେ ।

– "ଗଲା ହପ୍ତାରେ ସବୁତକ ହଳଦୀ ବିକି ଏତକ ପାଇଥିଲି ।" ଛଳ ଛଳ ଆଖିରେ ସାଉଡା କହିଲା ।

"ସବୁ କାହିଁକି ବିକିଦେଲ ?" ଡାକ୍ତର ପୁଣି ପଚାରିଲେ ।

"ଘରେ ବୁଢ଼ୀ ବେମାର । ତାକୁ ଭଲ କରିବା ପାଇଁ ତ ସବୁ ବିକିଥିଲି ।" ଦୀର୍ଘ ନିଶ୍ୱାସ ଛାଡ଼ି ପୁଣି କହିଲା – "ଏବେ ପୁଅର ମଡ଼ା ଉଠିବାରେ କାମ ଦେଲା ।" ଏତକ କହିଲା ବେଳକୁ ସାଉଡ଼ା କୋହଗ୍ରସ୍ତ ହୋଇଗଲାଣି ।

"କଣ ହୋଇଛି ବୁଢ଼ୀର ?" ସ୍ୱାଭାବିକ ଭାବରେ ଡାକ୍ତର ପଚାରିଲେ ।

ସାଉଡ଼ା ଡାକ୍ତରଙ୍କ ଆଡ଼କୁ ଚାହିଁଲା ପୁଣି ତଳେ ଶୋଇଥିବା କୁରୁପାର ଶରୀରକୁ । – "ବୁଢ଼ୀ ଆଜି ମରିବ କି କାଲି ମରିବ । ଦୁଇ ସପ୍ତାହ ହେଲାଣି ଝାଡ଼ା ସାଙ୍ଗକୁ ଜ୍ୱର ହେଉଛି । ଏବେ ପୁଅର ଶବକୁ ଦେଖିଲେ ମରିଯିବ, ମରିଗଲେ ଏକାଥରେ ଦୁଇ ଜଣଙ୍କୁ ଜାଳିଦେବି ।"

ଏତକ କହି ଦେଇ ସାଉଡ଼ା ସେହି ଦୁଃଖରେ ପାଗଳ ପ୍ରାୟ ହସିଦେଲା । ସେହି ହସ ପୁଣି ଏକ ବିରାଟ କ୍ରନ୍ଦନରେ ପରିଣତ ହୋଇଗଲା । ସେ ଜୋରରେ କାନ୍ଦିବାକୁ ଲାଗିଲା । କାନ୍ଦି କାନ୍ଦି ଶବ ବ୍ୟବଚ୍ଛେଦ ଗୃହର ପ୍ରାଚୀର ଆଡ଼କୁ ଦୌଡ଼ିଯାଇ ନିଜର ମୁଣ୍ଡଟାକୁ ପିଟି ଦେବାକୁ ବସିଥିଲା । ଗାଁର ଭାଇ, ଡାକ୍ତର ଓ ପୁଲିସ ଅଧିକାରୀ ସମସ୍ତେ ଧରି ନେଲେ ।

"ଏ ଲଢେଇରେ କିନ୍ତୁ କେତେ ଜଣ ବେଶ ଦୂରରେ ଅଛନ୍ତି । ସେମାନେ ବହୁତ ସୁରକ୍ଷିତ ।" ଡାକ୍ତର ଜଣକ ପୁଲିସ ଅଧିକାରୀଙ୍କୁ ଚାହିଁ କହିଲେ । ପୁଲିସ୍ ଅଧିକାରୀ ଥିଲେ ନୀରବ । ସେ ବୁଝିବାକୁ ଚେଷ୍ଟା କରୁଥିଲେ । ସେତେବେଳକୁ ସମସ୍ତଙ୍କ ଆଖି କିନ୍ତୁ ଲୁହରେ ଛଳ ଛଳ ହୋଇସାରିଥିଲା ।

ସାଉଡ଼ାକୁ ବୁଝାବୁଝି କରିବାରେ ବେଶ୍ ସମୟ ଲାଗିଗଲା । ସମସ୍ତେ ପୁଣି ଧରାଧରି କରି ଚାରି ଚକିଆ କମାଣ୍ଡର ଗାଡ଼ିର ମଝି ସିଟ୍‌ରେ କୁରୁପାକୁ ଶୁଆଇଦେଲେ । ସାଉଡ଼ା ତା'ର ଜବରଦସ୍ତି କୁରୁପାର ମୁଣ୍ଡକୁ ଧରି ସେହି ମଝି ସିଟ୍‌ରେ ବସିଲା । ସେ ଶେଷ ଥର ଲାଗି ତା'ର ପିତୃତ୍ୱକୁ ଅନୁଭବ କରିବା ପାଇଁ ଚାହୁଁଥିଲା ।

ଗାଡ଼ି ଷ୍ଟାର୍ଟ ଦେଲା । ସାଉଡ଼ା ଆଉଥରେ ସେହି ଶବ ବ୍ୟବଚ୍ଛେଦ ଗୃହ ଆଡ଼କୁ ଚାହିଁଲା ଯେଉଁଠି ରହିଗଲା କୁରୁପାର କଳିଜା ଓ ମୁଣ୍ଡର ଭେଜା ଟିକକ ସେହିମାନଙ୍କ ପାଖରେ ଯେଉଁମାନଙ୍କ ବିରୁଦ୍ଧରେ ସେ ବିଦ୍ରୋହ କରିଥିଲା ।



# ଯିବି ନା ରହିବି

ଲାନ୍ସ ନାୟକ ଲିମୋ ମାଝୀ । ବିହାର ରେଜିମେଣ୍ଟର ସେ ସାହସୀ ନାୟକ । ପୋଷ୍ଟିଂ ଏବେ କାଶ୍ମୀରର ଅତି ବିପଦସଙ୍କୁଳ ପୁଞ୍ଛ ଅଞ୍ଚଳରେ । ବେଶ କିଛି ବର୍ଷ ହେଲାଣି ସେ ଏବେ କାଶ୍ମୀରରେ । ହାତର ଅଙ୍ଗୁଳି ସର୍ବଦା ଅତ୍ୟାଧୁନିକ ବନ୍ଧୁକର ଟ୍ରିଗାର ଉପରେ ଥାଏ - ସେ ଡ୍ୟୁଟିରେ ଥାଏ ବା ନଥାଏ । ଏଠି ସଦାବେଳେ ଡ୍ୟୁଟି । ବହୁ ସମୟରେ ରାତିର ସ୍ୱପ୍ନରେ ମଧ୍ୟ ଆସିଯା'ନ୍ତି ଉଗ୍ରପନ୍ଥୀମାନେ । ବନ୍ଧୁକର ଆୱାଜରେ ନିଦ ଭାଙ୍ଗିଯାଏ, ତା'ଙ୍କୁ ଯେମିତି ଉଗ୍ରପନ୍ଥୀମାନେ ଘେରି ଯାଇଛନ୍ତି । ସ୍ୱପ୍ନ ଦେଖି ଝାଳେଇ ଯାଏ ସେ । କେବଳ ସେ କାହିଁକି ତା'ପରି ଅଧିକାଂଶ ସାଥୀମାନଙ୍କର ସେହି ସମାନ ଅବସ୍ଥା । ଦୀର୍ଘ ଆଠ ବର୍ଷର କାଶ୍ମୀର ରହଣି ଭିତରେ ସେ ବହୁବାର ଚେଷ୍ଟା କରିଛି ପଞ୍ଜାବ ଅଥବା ଦିଲ୍ଲୀ ଚାଲିଯିବା ପାଇଁ, ମାତ୍ର ଭାରତ ସରକାରଙ୍କ ଏଥିପାଇଁ ନିର୍ଦ୍ଦେଶ ନାହିଁ ।

ଲିମୋ ଏବେ ତିରିଶ ବର୍ଷର ଡିଣ୍ଡା ଯୁବକ, ବାହା ହୋଇନାହିଁ । ବର୍ଷକୁ ଥରେ ବା ଦୁଇଥର ଗାଁକୁ ଆସିଲେ ସାଙ୍ଗସାଥୀ, ଘର ଲୋକ ସମସ୍ତେ ବାଧକରନ୍ତି । ମାତ୍ର ହଁ ହଁ କରିଦେଇ ପୁଣି ଚାଲିଯାଏ ଡ୍ୟୁଟିକୁ । କାଶ୍ମୀରର ବାହାରକୁ ପୋଷ୍ଟିଂ ନହେବା ପର୍ଯ୍ୟନ୍ତ ସେ ବାହା ହେବନାହିଁ । ଯଦି ବାହା ହୁଏ ଏବଂ ତା'ପରେ ଉଗ୍ରପନ୍ଥୀର ଗୁଳିରେ ସେ ମରିଯାଏ ତେବେ..... ଦୁଇଦିନ ବି ସାଥୀରେ ବିତାଇ ନଥିବା ତା'ସ୍ତ୍ରୀ ହିଁ ସବୁ ସରକାରୀ ସୁବିଧାର ମାଲିକ ହେବ । ଅଥଚ ତା'ର ଘର ଲୋକେ କ'ଣ ପାଇବେ ? ଏ କଥା ଅବଶ୍ୟ ସେ ତା'ର ଅତି ନିଜର ସାଥି ମୁକୁନ୍ଦି ସାଉଁତା ଆଗରେ କହି ଦେଇଯାଇଥିଲା କାହାକୁ ନ କହିବା ପାଇଁ । ମୁକୁନ୍ଦି ଓ ଲିମୋ ପିଲାବେଳୁ ସାଥୀ । ସାଙ୍ଗ ହୋଇ ପାଠ ପଢ଼ିଥିଲେ । ଲିମୋ ଚାଲିଲା ଚାକିରିକୁ । ମୁକୁନ୍ଦି ରହିଗଲା ଗାଁରେ ।

ଲିମୋର ଘର କହିଲେ ବଡ଼ ଦୁଇ ଭାଇ, ଭାଉଜ, ପୁତୁରା ଓ ଝିଆରୀଙ୍କୁ ମିଶାଇ ଆଠ ଜଣ । ଘରେ ବୁଢ଼ୀ ମା'ର ଅଣ୍ଟା ନଇଁଆସିଲାଣି । ତଥାପି କାମରେ ଲାଗି ଥାଏ । ତା'ର ଗାଁ କହିଲେ ରାୟଗଡ଼ାରୁ କୋରାପୁଟ ଆଡ଼କୁ ତିରିଶ ମାଇଲପରେ କୁମ୍ଭିକଟା ଛକ । ସେହି ଛକର ବାମ ପଟକୁ ପଡ଼ିଥିବା ରାସ୍ତାରେ ଚାଲି ଚାଲି ଆଠ କି ଦଶ କିଲୋମିଟର ଗଲେ

ଦୁଇଟି ଘାଟି ପାରି ହେବାକୁ ହୁଏ । ତାପରେ ସୁକରୁଲି ବୋଲି ଯେଉଁ କନ୍ଧ ଗାଁଟିଏ ଆସିବ ସେଇଟି ଲିମୋର ଗାଁ । ଗାଁରେ ପଚିଶି କି ତିରିଶି ଘର, ସମସ୍ତେ କନ୍ଧ ଆଦିବାସୀ । ବର୍ଷକ ଅଧାଦିନ ଚାଷରେ ଲାଗିଲେ ବାକି ଅଧାଦିନ ଜଙ୍ଗଲ ଉପରେ ନିର୍ଭର ।

ସକାଳ ହେଲେ ଗାଁର ପିଲା ଓ ବୁଢ଼ା ଗୋରୁ ଗାଈ ଧରି ଜଙ୍ଗଲକୁ ଗଲେ । ମା'ମାନେ, ଝିଅମାନେ ଡକାଡକି ହୋଇ ଚାଲନ୍ତି ସେହି ଜଙ୍ଗଲକୁ । ଗାଁକୁ ଲାଗି ବଖୁରିଆ ଛାତର ସରକାରୀ ସ୍କୁଲ ଘର । ଗାଁରେ ରହିଯାଇଥିବା ପିଲାମାନେ ହୋ ହୋ ହୁଅନ୍ତି ସ୍କୁଲରେ । ମାସକୁ ଥରେ କି ଦିଥର ଶିକ୍ଷକ ତା'ର ଖାତାପତ୍ର ଧରି ଆସନ୍ତି ସ୍କୁଲକୁ । ଦିନେ ଦୁଇ ଦିନ ରହି ପୁଣି ଚାଲିଯା'ନ୍ତି । ଗଲାବେଳେ ଗାଁରେ କାହାକୁ କିଛି କହି କରି ମଧ ଯା'ନ୍ତି ନାହିଁ ।

ଲିମୋର ବଡ଼ଭାଇ କୁମ୍ଭିକଟା ଆବାସିକ ସ୍କୁଲରେ ଲିମୋର ନାମ ଲେଖେଇ ଦେଇଥିଲେ । ସପ୍ତମ ଶ୍ରେଣୀ ପରେ ରାୟଗଡ଼ା ନିଜେ ଆସି ବଡ଼ ସ୍କୁଲରେ ନାମ ଲେଖେଇ ଦେଇଥିଲା ଲିମୋ । ସେହିଥିରୁ ସେ ମାଟ୍ରିକ୍ ପାଶ କଲା । ସାଙ୍ଗ ପିଲାଙ୍କ ସହିତ ଥରେ ଲୁଚିକରି ଭୁବନେଶ୍ୱର, ପୁରୀ ଓ କଟକ ବୁଲିବାକୁ ଯାଇଥିଲା । କଟକର ବାରବାଟୀ ଷ୍ଟାଡିୟମ ସାମ୍ନାରେ ଲମ୍ବା ଧାଡ଼ି । ମିଲିଟାରୀରେ ପିଲାମାନଙ୍କୁ ନିଆଯାଉଥିଲା । କୌତୁହଳରେ ସେ ମଧ ଠିଆ ହୋଇଯାଇଥିଲା ଧାଡ଼ିରେ ଅନ୍ୟ ସାଙ୍ଗମାନଙ୍କ ସହିତ । ଅନ୍ୟମାନେ କଟିଗଲେ, ମାତ୍ର ସେ ବଛା ହେଲା । ତା'ପରେ ବିଭିନ୍ନ ସ୍ଥାନରେ ଟ୍ରେନିଂ ପରେ ଏବେ କାଶ୍ମୀରରେ ପୋଷ୍ଟିଂ ।

ହେଲେ ସେ ଯେଉଁଠି ଥାଉ ନା କାହିଁକି ବର୍ଷକରେ ଥରେ ବା ଦୁଇ ଥର ଗାଁକୁ ଆସିବା ନିଶ୍ଚିତ । ପ୍ରତିଥର ଗାଁର ପରିସ୍ଥିତି ତାକୁ କଷ୍ଟ ଦିଏ । ଗାଁ ସ୍କୁଲ ଶିକ୍ଷକ କେବେ ଦେଖା ଦିଅନ୍ତି ପୁଣି କେବେ ନାହିଁ । ମହିଳା ମଣ୍ଡଳର ସଦସ୍ୟମାନେ ପିଲାଙ୍କୁ ଖାଇବାକୁ ଦେଲା ପରେ ସ୍କୁଲ ଛୁଟି । ପାଠର ନାମ ନାହିଁ । କେବେ କେମିତି ଏ.ଏନ.ଏମ. ଦିଦିଜଣକ ଗାଁକୁ ଆସିଲେ ବଟିକା ଦେବେ । ମ୍ୟାଲେରିଆ ଜ୍ୱର ହେଲେ ସଢ଼ିବା କଥା । ଅତି ଖରାପ ହେଲେ ଗାଁ ଭାଇମାନେ ଦଉଡ଼ିଆ ଖଟରେ ବୋହି ବୋହି ଦୁଇଟି ଘାଟି ପାରିହୋଇ କୁମ୍ଭିକଟା ଡାକ୍ତରଖାନା ନେବେ । ସେଥିରେ ପୁଣି ଭାଗ୍ୟ ଜୋର ଥିଲେ ବଞ୍ଚିବା କଥା, ନଚେତ୍ ମରିବା ନିଶ୍ଚିତ । ଗାଁକୁ ରାସ୍ତାଟିଏ ନାହିଁ ଯେ କାହାର ସାଇକେଲରେ ବି ରୋଗୀକୁ ଡାକ୍ତରଖାନା ନେବା ସମ୍ଭବ ହେବ ।

ଗାଁକୁ ଆସିଲେ ଲିମୋ ବର୍ଷକର ସଞ୍ଚୟରେ ତା' ନିଜ ପୁତୁରା, ଝିଆରୀ ଓ ଅନ୍ୟମାନଙ୍କୁ କୁମ୍ଭିକଟା, ରାୟଗଡ଼ା, ଲକ୍ଷ୍ମୀପୁର ସ୍କୁଲରେ ନାମ ଲେଖାଏ; କେଉଁ ଖୁଡ଼ୀ କି ଦାଦି କି ପୁତୁରା ନହେଲେ ଝିଆରୀ ମ୍ୟାଲେରିଆ କି ଝାଡ଼ାରେ ପଡ଼ିଥିଲେ ଔଷଧ ଆଣିଦିଏ; ନଚେତ୍ ଡାକ୍ତରଖାନା ନେବାରେ ଯାଏ । ସେହିଥିରେ ପୁଣି ଛୁଟି ସରିଯାଏ । ଲିମୋ ଡ୍ୟୁଟିରେ ଯୋଗ

ଦିଏ । ପୁଣି ବନ୍ଧୁକର ଟ୍ରିଗାର ଉପରେ ଆଙ୍ଗୁଠି ରଖେ । ଏଥର ଉଗ୍ରପନ୍ଥୀ ତା'ର ମୁଖ୍ୟ ଟାର୍ଗେଟ୍ । ସେହି ଭିତରେ ସେ ଗାଁର କଥା ଭାବେ । ଗାଁକୁ ସ୍ୱପ୍ନରେ ଦେଖେ ।

ଗାଁରେ ଥିଲା ବେଳେ ସେ ରେଡିଓରେ ଶୁଣେ କାଶ୍ମୀର ଉଗ୍ରପନ୍ଥୀଙ୍କ ଗୁଳିରେ ଯବାନଙ୍କ ମୃତ୍ୟୁ । ତା'ର ମନ କ୍ରୋଧରେ ଜର୍ଜରିତ ହୁଏ । ଶଙ୍କାରେ ରହେ ସେ ଜାଣି ଥିବା କେହି ଯବାନ ସାଥୀ ଆଉ ଚାଲିଗଲା ନାହିଁ ତ ! ପୁଣି କାଶ୍ମୀରରେ ଥିଲା ବେଳେ ଡେରିରେ ହେଲେ ବି କେହି କେମିତି ରାୟଗଡ଼ାରୁ ଫୋନ୍ କରି କେଉଁ ବଡ଼ବାପା, ଦାଦା ଅଥବା ଭାଉଜ, ଭାଇ କି ପୁତୁରା ବେମାର ପଡ଼ି ଚାଲିଗଲେ ବୋଲି ଖବର ଦିଅନ୍ତି । ଦୁଃଖରେ ଦିନେ ଦୁଇଦିନ ତା'କୁ ଖାଇବାକୁ ଇଚ୍ଛା ହୁଏ ନାହିଁ । ରାତିରେ ଶୋଇବାକୁ ଚେଷ୍ଟାକରି ମଧ୍ୟ ପାରେ ନାହିଁ । ଅର୍ଦ୍ଧରାତିରେ ଉଠି ନିଜ ଲୋକଙ୍କ ପାଇଁ କାନ୍ଦେ । କାନ୍ଦିକରି ନିଜକୁ ହାଲକା କରେ, ପୁଣି ନିଦରେ ଶୋଇଯାଏ ।

ସ୍ୱପ୍ନ ଦେଖେ ଗାଁ ପାଖ ଜଙ୍ଗଲିଆ ରାସ୍ତାରେ ଘୁରି ବୁଲୁଥିବା ସେହି ନକ୍ସଲବାଦୀ ଯୁବକମାନଙ୍କୁ । ଗଲା ଥର ଗାଁରେ ଥିଲାବେଳେ ସେମାନଙ୍କ ବିଷୟରେ ଗାଁର ଯୁବକମାନଙ୍କଠାରୁ ଶୁଣିଛି । ନକ୍ସଲଙ୍କ ସାହସିକ କାର୍ଯ୍ୟକୁ ତା'ର ଆଦିବାସୀ ଭାଇମାନେ ପସନ୍ଦ କରୁଛନ୍ତି । ସେହି ପସନ୍ଦ ଅପସନ୍ଦ ଭିତରେ ରହିଛି ଏତେ ବର୍ଷର ସରକାରୀ ଉପେକ୍ଷା । ସେହି ଉପେକ୍ଷା ହେତୁ ଅଜସ୍ର କ୍ରୋଧ, ବିରକ୍ତି ଓ ହିଂସ୍ର ହେବାର ପ୍ରାକ୍ ସୂଚନା ସେ ଦେଖିପାରେ ।

ଗୋଟିଏ ଦର୍ପଣରେ ସେ ଦୁଇଟି ଲିମୋକୁ ଦେଖେ । ଗୋଟେ ପଟେ କାଶ୍ମିରୀୟତ୍ର ଡାକରା ବିପକ୍ଷରେ ସେ ଜଣେ ସୈନ୍ୟବାହିନୀର ଯବାନ । ଅଣକାଶ୍ମିରୀ ଶାସକବର୍ଗ କାଶ୍ମୀର ପ୍ରତି ଯେଉଁ ଉପେକ୍ଷା କରିଛନ୍ତି ତାହାର ବିପକ୍ଷରେ ଉଗ୍ରପନ୍ଥୀ କାଶ୍ମିରୀ ଯୁବକଙ୍କୁ ଆହ୍ୱାନ ଦେଇଛନ୍ତି ଓ ଲମ୍ବା ଲଢ଼େଇ ପାଇଁ ପ୍ରସ୍ତୁତି ଏଠି ଚାଲିଛି । ମଝିରେ ସୈନ୍ୟ ବାହିନୀ ଯିଏ କି ବହୁ ସମୟରେ ନିଜ ଜୀବନକୁ ବଞ୍ଚାଇବା ପାଇଁ ମଧ୍ୟ ସାଧାରଣ କାଶ୍ମିରୀ ଯୁବକ ଉପର ଗୁଳିଚଳାଏ । ତାକୁ ନେଇ ବେଶ କିଛି ଦିନ ତମ୍ବିତୋଫାନ ହୁଏ ଓ ପରେ ପୁଣି ପରିସ୍ଥିତି ଶାନ୍ତ ହୋଇଯାଏ । 'ଯଦି ସରକାର ସେପରି ପ୍ରଶ୍ରୟ ନଦେବେ ତେବେ ଯବାନମାନେ କାଶ୍ମୀରରେ ରହିବେ କେମିତି ? ସତେରେ ସେହି ମୃତ ବ୍ୟକ୍ତି ଜଣକ ଯଦି ଉଗ୍ରପନ୍ଥୀ ହୋଇଥାନ୍ତା ତା'ହେଲେ ?' ଲିମୋ ଯବାନଙ୍କ ସପକ୍ଷରେ ଯୁକ୍ତି ବାଢ଼େ ।

ଲିମୋ ଯେତେବେଳେ ନିଜର ଦ୍ୱିତୀୟ ରୂପକୁ ଦର୍ପଣ ସାମ୍ନାରେ ଦେଖିବାକୁ ଚେଷ୍ଟା କରେ ସେତେବେଳେ ତା'ର ଛାତି ଧଡ୍ କରି ରହିଯାଏ । ଉପେକ୍ଷା ଓ ଠକାମି ସାଙ୍ଗକୁ ଜେଲ୍‌କୁ ପଠେଇଦେବାର ଧମକ, ସେହି ହେତୁ ଆଦିବାସୀ ଯୁବକ ମଧ୍ୟରେ ପୁଞ୍ଜିଭୂତ କ୍ରୋଧ, ଆଉ ସେହି କ୍ରୋଧକୁ ପ୍ରଶମିତ କରିବାର ରାସ୍ତା ହେଲା ନକ୍ସଲ ହେବା । ଆଦିବାସୀ ଯୁବକର ନକ୍ସଲଙ୍କୁ ପ୍ରଶଂସା, ନକ୍ସଲଙ୍କ ପ୍ରତି ଆଗ୍ରହ ଓ ନକ୍ସଲଙ୍କ ଘାତକ ହମ୍‌ଲା ପ୍ରତି ଦୁର୍ବଳତା ଯେ ବଢୁଛି ସେକଥା ସେ ବୁଝୁଥିଲା ।

ସେହିପରି କେବେ ସେନା ବାହିନୀର ଯବାନ ଭାବରେ ନକ୍ସଲ ଦମନ ପାଇଁ ଆସି ନିଜର ଭାଇ କି ପୁତୁରାକୁ ନିଜର ଟାର୍ଗେଟ... ଲିମୋ ଆଉ ଭାବି ପାରେ ନାହିଁ । ତା'ର ଛାତି ଧଡକରି ରହିଯାଏ । ଭାରତ ସରକାର ଯେମିତି ତାକୁ ଏକ ଧର୍ମ ସଙ୍କଟରେ ପକାଇଦେଉଛନ୍ତି । ତା'ର ଭାରତୀୟତା ସହିତ ତା'ର ଗାଁ ପ୍ରତି ଥିବା ପ୍ରୀତି ମଧ୍ୟରେ ଘମାଘୋଟ ଲଢ଼େଇରୁ କିଛି ସମୟ ବାହାରିଯିବା ପାଇଁ ସେ ମିଲିଟାରି ରମ୍‌ରୁ ତୁରନ୍ତ ଦୁଇ ଢୋକ ପିଇ ଦେଇ ନିଦ ଜଲଦି ଆସିଯିବ ବୋଲି ଭାବେ । ମାତ୍ର ବଦ୍‌ମାସ ନିଦ ବି ସେତେବେଳେ ପାଖ ପଶେ ନାହିଁ । ଦେହରେ ଝାଳ ଆସିଯାଏ । ପୁଣି କେବେ କେବେ ଆଖିରେ ନିଦ ଜାଗାରେ ଲୁହ ଆସିଯାଏ । ମନେପଡ଼େ ଚିକିତ୍ସା ଅଭାବରୁ ନିକଟରେ ମରିଯାଇଥିବା ତା'ର ଅତି ଆଦରର ପୁତୁରା ଦିନୁ । ଏଥର କାନ୍ଦିକରି ମନକୁ ହାଲୁକା କରିବାକୁ ଚେଷ୍ଟା କଲେ ମଧ୍ୟ ପାରେ ନାହିଁ, ଭୟ ଓ ଶଙ୍କା ତାକୁ ଜାବୋଡ଼ି ଧରେ ।

ଗଲା ବର୍ଷ ଛୁଟିରେ ଲିମୋ ଗାଁକୁ ଆସିଲା ବେଳେ ସବୁ ଯେମିତି ତା'କୁ ଅଲଗା ଅଲଗା ଲାଗିଥିଲା । କୁମ୍ଭିକଟା ଛକରୁ ଓହ୍ଲାଇ ନିଜର ବିରାଟ ବ୍ୟାଗଟିକୁ କାନ୍ଧରେ ପକାଇ ଚାଲିବାରେ ଲାଗିଲା । ଘାଟିପାରି ହେଲା ବେଳକୁ ଦେଖିଲା କିଛି ଲୋକ ଗାଁ ପାଖ ରାସ୍ତାରେ ଏକାଠି ହୋଇଛନ୍ତି । ତା'ର ମନ ଶଙ୍କାଗ୍ରସ୍ତ ହୋଇଗଲା । ଶୀଘ୍ର ପାଦ ପକାଇ ସେମାନଙ୍କ ପାଖରେ ପହଞ୍ଚିଲାବେଳକୁ ଦେଖିଲା ନିଜ ଗାଁର ଭାଇ, ଦାଦା, ଖୁଡ଼ୀମାନେ ମାଟି କାମରେ ବ୍ୟସ୍ତ । ସରକାରୀ ଯୋଜନାରେ ମାଟି ରାସ୍ତା ତିଆରି ହେଉଛି । ଗାଁର ଦିନା କହିଲା, "ଲିମୋଦାଦା ! ଆର ଥରକୁ ଆମେ ଗାଡ଼ି ନେଇକରି ଆସିବୁ ତୁମକୁ ଆଣିବାପାଇଁ ।" ବେଶ କିଛି ହାସ୍ୟରୋଳ ତା'କୁ ପିଛା କଲା । ସେ ମଧ୍ୟ ବ୍ୟାଗ ଥୋଇ ଦେଇ ଦି ଫାଉଡା ମାଟି ହାଣିଦେଲା । ସେ ବି ସେହି ଗାଁର ଜଣେ । ତା' ନାମ ବି ସେହି ସରକାରୀ ରାସ୍ତା ଉପରେ ସେ ଲେଖିଦେଲା ।

ସେଥର ସେ ଦେଖିଲା ଗାଁର ଛୋଟ ପିଲାମାନେ ଆଉ ବାହାରେ ବୁଲୁ ନାହାନ୍ତି । ଗାଁ ସ୍କୁଲରୁ ପଣିକିଆ ଡାକ ରାସ୍ତା ଯାଏ ଶୁଣାଯାଉଛି । ଗାଁ ଶିକ୍ଷକ ଆଜିକାଲି ସ୍କୁଲରେ ରହୁଛି । ତେଣୁ ସ୍କୁଲ ନିୟମିତ ଚାଲୁଛି । ସବୁଥର ପରି ଏଥର କିନ୍ତୁ ହଠାତ୍ କେହି ଆଉ ତା'କୁ ଘେରିଯାଇ ସହରର ଔଷଧ ମାଗୁନାହାନ୍ତି । ଏ.ଏନ୍.ଏମ୍. ଦିଦି ଆସି ଔଷଧ ବାଣ୍ଟିକରି ଯାଇଛି । ଗାଁର ପରିବର୍ତ୍ତନ ତାକୁ ଖୁସି ଦେଲା । ଖୁସି ହୋଇ ଗାଁର ଏପାଖ ସେପାଖ ଘୁରିବାରେ ଲାଗିଲା । ବହୁ ଦିନର ପ୍ରତୀକ୍ଷା ଯେମିତି ପୂରଣ ହେଲା ।

"ସରକାର ଶେଷରେ ଲୋକଙ୍କ କଥା ଶୁଣିଲେ । ଲୋକଙ୍କ ପ୍ରତି ଦରଦୀ ହେଲେ ।" ଲିମୋ ତା'ର ସାଙ୍ଗ ମୁକୁନ୍ଦିକୁ ଦିନେ କହିଲା ।

"ନା" ମୁକୁନ୍ଦି ତୁରନ୍ତ ଉତ୍ତର ଦେଲା । "ସରକାର ଦରଦୀ ହୋଇ ନାହାନ୍ତି । ବରଂ ନକ୍ସଲ ଡରରେ ସରକାର ଆମର ହେବାକୁ ଚେଷ୍ଟା କରୁଛନ୍ତି ।"

ସ୍ତମ୍ଭୀଭୂତ ଲିମୋ ନକ୍ସଲଙ୍କ ଉପସ୍ଥିତିକୁ ସହଜରେ ଗ୍ରହଣ କରିପାରୁନଥିଲା । ମୁକୁନ୍ଦିର ସାମାନ୍ୟ ଯୁକ୍ତିରେ ସେ ବାଟବଣା ହୋଇଗଲା ।

- "ହେଲେ ଲୋକେ ପୁଣି ଉପକାର ପାଇଲେ କି ନାହିଁ ?" ଲିମୋ ପୁରୁଣା କଥାରୁ ଖିଅ ଧରିଲା ।

- "ହଁ ପାଇଲେ । ସରକାରଙ୍କ ନକ୍ସଲ ଡର ଯେତିକି ଦିନ ଥିବ ସେତିକି ଦିନ ଏସବୁ ଠିକ୍ ଚାଲିବ"- ସ୍କୁଲ ଆଡ଼କୁ ଚାହିଁ ମୁକୁନ୍ଦି ଉତ୍ତର ଦେଲା ।

ଲିମୋ କିଛି କ୍ଷଣ ପାଇଁ ଅନ୍ୟମନସ୍କ ହୋଇଗଲା । ସରକାର ତେବେ କାଶ୍ମିରୀ ପରି ଏଠାରେ ବି ନିଜର ଅସ୍ତିତ୍ୱ ଖୋଜୁଛି !

ଲିମୋ ପୁଣି ପ୍ରକୃତିସ୍ଥ ହୋଇ ପଚାରିଲା- "ଏଇଟା କଣ ଗାଁର ସବୁ ଯୁବକମାନେ ଜାଣିଛନ୍ତି ?"

"ଜାଣିଛନ୍ତି ମାନେ ? ଏ ଦିଦି, ମାଷ୍ଟର ଆଜ୍ଞା ସମସ୍ତେ ସେହିକଥା କହୁଛନ୍ତି । ସେମାନେ ଗାଁକୁ ନ ଆସିଲେ ସେମାନଙ୍କ ଚାକିରି ଚାଲିଯିବ ଯେ !"

ମୁକୁନ୍ଦି ନିଜ ଟାଙ୍ଗିଆ ପାଇଁ ସୁନାରି କାଠର ବେଣ୍ଟ ପ୍ରସ୍ତୁତିରେ ମନ ଦେଲା । ବେଣ୍ଟ କାଠକୁ ପାଲିସ୍ କରିବାରେ ମୁକୁନ୍ଦିକୁ ଲିମୋ ସାହାଯ୍ୟ କଲା । ଦ୍ୱିପ୍ରହରର ନିସ୍ତବ୍ଧତାକୁ ମୁକୁନ୍ଦିର ଠୁକ୍ ଠୁକ୍ ଶବ୍ଦ ଭାଙ୍ଗୁଥିଲା ।

ବେଶ କିଛି ସମୟ ଗଡ଼ିଗଲା ।

- "ସେମାନେ କଣ ଏବେ ଆସୁଛନ୍ତି ?" ଲିମୋ ଧୀରେକରି ପଚାରିଲା ।

- "ହଁ, କେବେ କେମିତି ଆମ ବଗିଚା ପାଖ ତେନ୍ତୁଳି ଗଛ ତଳେ ମିଟିଂ ହୁଏ । ପୁଣି ସେମାନେ ଜଙ୍ଗଲିଆ ରାସ୍ତାଦେଇ ଚାଲିଯା'ନ୍ତି ।" ମୁକୁନ୍ଦି ଏଥର ଛେପ ଢୋକିଲା । ଗାଁରେ ନିଷ୍ପତ୍ତି ହୋଇଥିଲା ଲିମୋକୁ ନକ୍ସଲଙ୍କ ଆସିବା ବିଷୟ କେହି କହିବେ ନାହିଁ । ଯାହା ହେଲେ ବି ସେ ସରକାରୀ ସୈନ୍ୟ । ମୁକୁନ୍ଦି ଅବଶ୍ୟ ଯୁକ୍ତି କରିଥିଲା । ସେ ବୁଝିଥିଲା ଲିମୋ ପ୍ରଥମରେ ଏ ଗାଁର ପିଲା ତା'ପରେ ଯାଇଁ ସେ ସରକାରଙ୍କ ଯବାନ ।

ଲିମୋ କିଛି ସମୟ ପରେ ପଚାରିଲା- "ପୁଲିସବାଲା ଆସି ହଇରାଣ କରୁନାହାନ୍ତି ?" ଏହି ପ୍ରଶ୍ନ ଭିତରେ ଥିଲା ତା'ର କାଶ୍ମିରୀରୁ ଆଣିଥିବା ହୃଦୟବିଦାରକ ଅନୁଭୂତି ।

- "ରହ, ତୁ ଗାଁରେ ରହିଲେ ଦେଖିବୁନିକି । ଆଜିକାଲି ମଝିରେ ମଝିରେ କୁମ୍ବିକଟା ଆଇଆଇସି ପୁଲିସ ମଧ୍ୟ ଗାଁକୁ ଚାଲିଆସୁଛି । ଗାଁର କିଏ ଝୋଲାରେ ପଡ଼ି ମରିଗଲେ କି ନିଆଁରେ ଜଳିଗଲେବି ସୁରୁଳି ଗାଁକୁ ଆଗେ ପୁଲିସ ଆସୁନଥିଲା । ଏବେ କିନ୍ତୁ କାବ୍ରା ପୁଲିସ ଆସି ଗାଁ ଚାରିପଟେ ପାଇଁତରା ମାରୁଛନ୍ତି । ଗାଁ ମଝିରେ ବସି ଜଣେ ଭାଷଣ ଦେଉଛି । ଆମକୁ ଦେଖାଇ ଦେଖାଇ ବନ୍ଧୁକ ସଫାକରୁଛନ୍ତି । ନିଜ ବୋତଲରୁ ପାଣି ପିଇ ସମସ୍ତେ ଚାଲିଯାଉଛନ୍ତି ।"

- "ମାନେ ?"

- "ଆରେ, ଆମକୁ ଉପକାର ହେଲା ଭଳି କଥା କହନ୍ତି କିନ୍ତୁ ବିଶ୍ୱାସ କରନ୍ତି ନାହିଁ ।" ମୁକୁନ୍ଦି ମୁହଁରେ କ୍ଷୀଣ ହସ ।

- "ଆମେ ଠିକ ଏୟାହିଁ କରୁଛୁ କାଶ୍ମୀରୀରେ ।"

- "ସେଠିବି କଣ ଏମିତି ଲଢ଼େଇ ଚାଲିଛି ?"

- "ସେଠି ଏଠାରୁ ଆହୁରି ବଡ଼ ଲଢ଼େଇ, ଗାଁ ଗାଁରେ ବଙ୍କର, ବଡ଼ ବଡ଼ ଖାଲ । ସେହି ଖାଲ ଭିତରେ ମୁଁ ଓ ଆମ ଯବାନମାନେ । ଉଗ୍ରପନ୍ଥୀ କିଏ କେତେବେଳେ କେଉଁ ପଟରୁ ଆସିବ କିଛି କହିହେବନି ।"

- "ଆଉ ଗାଁ ଲୋକେ ?"

- "ସେମାନଙ୍କର ଆମକୁ ଡର, ଆମର ତାଙ୍କୁ ବି ଡର ।"

- "ଆଉ ସରକାରକୁ ?" ମୁକୁନ୍ଦି ମଜାରେ ପଚାରିଦେଲା ।

ସରକାରର ଆମ ସମସ୍ତଙ୍କୁ ଡର । ଲିମୋର ସେହି ତାତ୍ପର୍ଯ୍ୟପୂର୍ଣ୍ଣ ମନ୍ତବ୍ୟ ଭିତରେ ରହିଥିଲା ଅସୁମାରି କୋହ । ସେ ତା'ର ଅଜାଣତରେ ନିଜ ଭିତରେ କାଶ୍ମୀରବାସୀଙ୍କ ପାଇଁ ସହୃଦୟତା ଆଣିଦେଇଥିଲା । ଲିମୋ ପ୍ରଥମଥର ଲାଗି ମନେକଲା ସମଗ୍ର କାଶ୍ମୀର କେମିତି ଘେରି କରି ରହିଛି ଅନାବଶ୍ୟକ ବନ୍ଧୁକର ମୁନରେ । ସେ ବୁଝିଲା ସରକାର ତା'ର ଅସ୍ତିତ୍ୱ ଜାହିର କରୁଛି ତା' ଭଳି ଲକ୍ଷ ଲକ୍ଷ ଜବାନଙ୍କୁ ଧରି । ଆଜି ସେହି କାଶ୍ମିରୀୟତର ସ୍ଲୋଗାନ ତା'କୁ ଗାଁ ପାଖରେ ଶୁଣାଇଦେଲା ।

ଏଥର ରହିବା ଭିତରେ ଲିମୋ ଦେଖିଲା ବେଶ କିଛି ପରିବର୍ତ୍ତନ ଆସିଛି । ସେ ଭିତରୁ ଏକ ଦୁଃଖଦ ସ୍ଥିତି ହେଲା ଯେ, ସେଥର ରହିବା ଭିତରେ ଗାଁର ଯୁବକମାନେ ଆଉ ବେଶୀ ତା' ସହିତ ଥଟ୍ଟାମଜା କରୁନାହାନ୍ତି । ନିଜ ଗାଁରେ ନିଜେ କେମିତି ବିଦେଶୀ ଭଳି ତା'କୁ ଲାଗିଲା । ତା' ଚାକିରି ତା' ପାଇଁ ଏକ ଦୋଷ ହୋଇଗଲା ଯେମିତି ।

ଏଥର ଯିବା ସମୟ ଆସିଲା । ଲିମୋ ରାୟଗଡ଼ା ବାହାରିଲା ଆଗରୁ ଟ୍ରେନ ଟିକେଟ କରି ନେବା ପାଇଁ, ତା' ସହିତ ଅନ୍ୟାନ୍ୟ କାମ ମଧ୍ୟ । ତିନି ଦିନ ପରେ ଫେରିବ କହି ରାୟଗଡ଼ା ବାହାରିଲା । ହେଲେ ଦୁଇ ଦିନରେ ତା'ର ସମସ୍ତ କାମ ସରିଗଲା । ରାୟଗଡ଼ା ଯିବା ପରଦିନ ସନ୍ଧ୍ୟାରେ କୁମ୍ଭିକଟା ଛକରେ ପହଞ୍ଚି ସୁରୁଲି ଗାଁ ଆଡ଼କୁ ପଦମାଡ଼ିଲା । ଗୋଟିଏ ଡଙ୍ଗର ପାରି ହୋଇ ଦ୍ୱିତୀୟ ଡଙ୍ଗର ପାଖ ଘଞ୍ଚ ଜଙ୍ଗଲ ପାଖରେ ସିଆରପିଏଫର ବାଟାଲିୟନକୁ ଭେଟିଲା । ସାଙ୍ଗରେ ଥିଲେ କୁମ୍ଭିକଟା ଥାନା ଆଇଆଇସି । ସେମାନେ ତା'କୁ ଗାଁକୁ ଛାଡୁନଥିଲେ । ଆଉ କିଏ ହୋଇଥିଲେ କଥା ଅଲଗା । ନକ୍ସଲମାନେ ସୁରୁଲି ଆସିବାର ଅଛି ବୋଲି ସୂଚନା ତାଙ୍କ ପାଖରେ ଥିଲା । ଆସିଲେ ଟର୍ଚ୍ଚ ଜଳାଇ ସୂଚନା ଦେବାର ସର୍ତ୍ତ ରଖି ସେ ସେମାନଙ୍କ ପାଖରୁ ଚାଲିଆସିଲା ।

ଧଇଁ ସଇଁ ହୋଇ ଲିମୋ ଗାଁର ଜଗା, ଅଭି, ମାଗୁ, ଗଦା, ଲଦା ସବୁ ଯୁବକଙ୍କୁ ଖୋଜିଲା । କାହାରିକୁ ପାଇଲା ନାହିଁ । ନିଜ ବଡ଼ଭାଇଠାରୁ ସୂଚନା ପାଇଲା ତେନ୍ତୁଳି ଗଛ ତଳେ ମିଟିଂ ଚାଲିଛି । ତୁରନ୍ତ ସେ ତା'ର ଭାଇ କପୁର ମାଝି ହାତରେ ଖବର ଦେଲା - "ଯାଅ, ସେମାନଙ୍କୁ କହି ଦିଅ ସିଆରପିବାଲା କୁମ୍ଭିକଟା ଡଙ୍ଗର ଉପରେ ପହଞ୍ଚି ଗଲେଣି । ସେମାନେ ଗାଁର ଡାହାଣ ପାଖ ଜଙ୍ଗଲିଆ ରାସ୍ତା ଧରି ଶୀଘ୍ର ଚାଲିଯା'ନ୍ତୁ ।"

ସେ ନିଜେ ଚାଲିଲା ସିଆରପିଏଫ୍‌ର ବାଟାଲିୟନ ପାଖକୁ । ସେମାନଙ୍କ କମାଣ୍ଡରକୁ କହିଲା- "ସେମାନେ ତ ଗାଁର ବାମ ପାଖ ଝଞ୍ଜାବତୀ ନଦୀ ଦେଇ ଦାମନଯୋଡ଼ିର ରାସ୍ତା ଧରିଲେଣି ।"

ସିଆରପିଏଫର କମାଣ୍ଡର ତା'ର କଥାରେ ବିଶ୍ୱାସ କରି ସୁରୁଳିର ବାମ ପାଖ ନଦୀ ଆଡ଼କୁ ଗଲା ବେଳକୁ କପୁରର କଥାକୁ ବିଶ୍ୱାସ କରି ନକ୍ସଲଙ୍କ କମାଣ୍ଡର ତା'ର ଦଳକୁ ସୁରୁଳିର ଡାହାଣ ପାଖ ଜଙ୍ଗଲିଆ ରାସ୍ତା ଧରି ଚାଲିଗଲା ।

ଲିମୋ ସେହି ଡଙ୍ଗର ଉପରେ ବସି ଭାବୁଛି, - ଏକ ବିରାଟ ବିପଦକୁ ସେ ଟାଳି ଦେଇ ପାରିଲା । ନଚେତ କିଏ ଜାଣେ ତା' ଗାଁର କେହି ବି ହୁଏତ ଆଜି ଉଭୟର ବନ୍ଧୁକ ମଝିରେ ପ୍ରାଣ ଦେଇଥାନ୍ତା !

ଡଙ୍ଗର ଉପରେ ରାତିର ନିଶା ଗର୍ଜନ ତା' କାନକୁ କିନ୍ତୁ କିଛି ବାଜୁନଥିଲା । ତା' ଭିତରେ କେହି ଜଣେ ଯେମିତି କହୁଥିଲା, - 'ଆଉ ଡ୍ୟୁଟିକୁ ନଯାଇ ଗାଁରେ ସବୁଦିନ ପାଇଁ ରହିଯିବା ପାଇଁ ।' ହେଲେ ତା'ର ମନ ଗମ୍ଭୀର ହୋଇ ପ୍ରଶ୍ନ କରୁଥିଲା - 'ସତରେ ସେ କଣ ପାରିବ ? ଏତେ ଲମ୍ବା ଉପେକ୍ଷାର ଅନ୍ତଟିଏ କ'ଣ ସେ ଖୋଜିପାରିବ ?'



ବାପା ମନ ତାର ବିରକ୍ତ ଧରିଲା । ଦୀର୍ଘ ନିଃଶ୍ୱାସ ନେଇ ସେ ଭାବିଲା, ସରକାର ଉପରେ ଭରସା ରଖି ଝିଅକୁ ପାଠ ପଢ଼ାଇବା ପାଇଁ ଯେଉଁ ଆଶା ଟିକକ ବାନ୍ଧିଥିଲା, ଏଥିରେ ଅନ୍ଧାରରୁ ମୁକ୍ତି ପାଇବ, ସେଥିକୁ ଯେମିତି କଳା ବାଦଲ ଚାପିଦେଲା ।

– ଝଞ୍ଜାବତୀ



# ଦେବ ରଞ୍ଜନ

'ପାହାଡ଼ର ପୀଡ଼ା' ଆମ ସମୟର ଆମ ପ୍ରାଚୀନ ଜନଜାତିଙ୍କ ପୀଡ଼ା । ଯେଉଁମାନଙ୍କର ଜୀବନ, ସଂସ୍କୃତି ଓ ସହାବସ୍ଥାନ ପାହାଡ଼ ଭଳି ପ୍ରାଚୀନ ସେହିମାନଙ୍କ ପ୍ରତି ମନୁଷ୍ୟକୃତ ଅନ୍ୟାୟ, ଅତ୍ୟାଚାର ଓ ପୀଡ଼ା ଏ ସଂକଳନର ରକ୍ତବିନ୍ଦୁ ।

ଗାଳ୍ପିକ ଦେବ ରଞ୍ଜନଙ୍କର ଏହା ପ୍ରଥମ ଗଳ୍ପ ସଂକଳନ । ଦେବ ରଞ୍ଜନ ଜଣେ ସାମାଜିକ ସମସ୍ୟା ଓ ନିରାକରଣର ନିବନ୍ଧକାର, ଅଣପଞ୍ଜୀକୃତ ସାମାଜିକ କର୍ମୀ ଓ ଅଫ୍‌ବିଟ୍ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାତା । ବର୍ଷ ବର୍ଷ ଧରି ଜନଜାତିଙ୍କ ସହିତ ପ୍ରତ୍ୟକ୍ଷ ଭାବରେ ସାମିଲ୍ ହୋଇ ସେମାନଙ୍କର ସଂଘର୍ଷ ଓ ବଞ୍ଚିବାର ଅନନ୍ୟ ଅନୁଭୂତିରୁ ତିଆରି ତାଙ୍କର ଏ ଗଳ୍ପଗୁଚ୍ଛ । ଓଡ଼ିଆ ଭାଷାର ଜନଜାତି ଜୀବନଯାତ୍ରାର ଗଳ୍ପଧାରାରେ ଦେବ ରଞ୍ଜନଙ୍କ ପ୍ରୟାସ ଏକ ବଡ଼ ସଂଭାବନା ।

– ଭୀମ ପୃଷ୍ଟି